# ଅମର ଚରିତ



ସାଧୁ ସୁନ୍ଦର

ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ ଲିଃ

# ସାଧୁ ସୁନ୍ଦର ଦାସ



ଲେଖକ—

ଅଧ୍ୟାପକ ଶ୍ରୀଧର ଦାସ, ଏମ୍.ଏ.,ଡ଼.ଇଡ଼.

ଦ୍ୱିତୀୟ ସଂସ୍କରଣ

ପ୍ରକାଶକ—

ନ୍ୟୁ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ କୋ:

ବ୍ରହ୍ମପୁର : କଟକ : ସମ୍ବଲପୁର

୧୯୫୫



Rs 1-50

# ସୂଚୀ





# ସାଧୁ ସୁନ୍ଦର ଦାସ

## —ବାଲ୍ୟଜୀବନ—

ଅଜିକାଲି ଭାରତବର୍ଷର ନାନା ସ୍ଥାନରେ ବିଶେଷତଃ ତୀର୍ଥ କ୍ଷେତ୍ରମାନଙ୍କରେ ବହୁସଂଖ୍ୟକ ସାଧୁ ସନ୍ନ୍ୟାସୀ ଦେଖାଯାନ୍ତି । ସେମାନଙ୍କ ମଧ୍ୟରୁ ଅନେକେ ଲୋକଙ୍କୁ ଧର୍ମ ନାମରେ ପ୍ରତାରଣା କରି ଜୀବିକା ନିର୍ବାହ କରନ୍ତି । ଏମାନଙ୍କୁ ଦେଖି ଅନେକେ ମନେ କରନ୍ତି ଯେ ସାଧୁ ସନ୍ନ୍ୟାସୀ ନାମରେ ପରିଚିତ ଜଟାତିଳକଧାରୀ ଲୋକେ ଜନସାଧାରଣଙ୍କ ସରଳ ବିଶ୍ୱାସର ସୁଯୋଗ ନେଇ ନିଜର ଅଭିଳାଷ ପୂର୍ଣ୍ଣ କରିଥାନ୍ତି । କିନ୍ତୁ ସେହି ସାଧୁ ସନ୍ନ୍ୟାସୀଙ୍କ ମଧ୍ୟରେ ଯେ ପ୍ରକୃତ ମହାପୁରୁଷ ନ ଥାନ୍ତି, ତା ନୁହେଁ । ଭାରତର ଇତିହାସ ଆଲୋଚନା କଲେ ଆମ୍ଭେମାନେ ଏହିପରି ଧର୍ମପ୍ରାଣ ମହାପୁରୁଷଙ୍କର ପରିଚୟ ପାଉଁ । କବୀର, ନାନକ, ରାମଦାସ, ଶଙ୍କର, ରାମାନୁଜ ପ୍ରଭୃତି ମନୀଷୀମାନେ ମାନବ ଜାତିର ଯେଉଁ ମହାକଲ୍ୟାଣ ସାଧନ କରିଯାଇ ଅଛନ୍ତି ତାହା କେହି ଅବିଶ୍ୱାସ କରିବାର କାରଣ ନାହିଁ ।

ପବିତ୍ର ଉତ୍କଳଭୂମି ଅଧିକାଂଶ ମହାପୁରୁଷଙ୍କ ଧର୍ମ ଓ ନୀତି ପ୍ରଚାରର ପ୍ରଧାନ କ୍ଷେତ୍ର ଥିବାର ପ୍ରମାଣ ମିଳେ । ଚୈତନ୍ୟଦେବ

ଏହି ଜଙ୍ଗଲକୁ ତାଙ୍କର ପ୍ରଧାନ ଲୀଳାଭୂମି ରୂପେ ଗ୍ରହଣ କରି-ଥିଲେ । ପ୍ରାୟ ଦୁଇଶତ ବର୍ଷ ପୂର୍ବେ ଚୈତନ୍ୟଦେବଙ୍କ ପରି ଅନ୍ୟ ଜଣେ ମହାପୁରୁଷ ଜଙ୍ଗଲରେ ଅବତୀର୍ଣ୍ଣ ହୋଇ କେବଳ ଉତ୍କଳ ଖଣ୍ଡରେ ନୁହେଁ ପାଶ୍ଚାତ୍ୟ ଦେଶମାନଙ୍କରେ ମଧ୍ୟ ଖ୍ୟାତି ଅର୍ଜନ କରିଥିଲେ । ଏହି ମହାପୁରୁଷଙ୍କର ନାମ ସାଧୁ ସୁନ୍ଦର ଦାସ । 'ସୁନ୍ଦର୍ ବାବାଜୀ' ନାମରେ ସେ ଓଡ଼ିଶାର ପୁରପଲ୍ଲୀରେ ପରିଚିତ ହୋଇଥିଲେ ।

ଅଠଗଡ଼ ଏବେ କଟକ ଜିଲ୍ଲାର ଅନ୍ତର୍ଗତ । ସେତେବେଳେ ଏହା ଓଡ଼ିଶାର ଗୋଟିଏ ଗଡ଼ଜାତ ରାଜ୍ୟ ଥିଲା । ଏହି ରାଜ୍ୟରେ କୁମାରପୁର ଗୋଟିଏ କ୍ଷୁଦ୍ର ଗ୍ରାମ । ସେହି ଗ୍ରାମରେ ୧୭୨୦ ଖ୍ରୀଷ୍ଟାବ୍ଦରେ ସୁନ୍ଦର ଦାସଙ୍କର ଆବିର୍ଭାବ ହୋଇଥିଲା । ସେ ସୂର୍ଯ୍ୟ-ବଂଶୀୟ କ୍ଷତ୍ରିୟ କୁଳରେ ଜନ୍ମଗ୍ରହଣ କରିଥିଲେ । ଜନ୍ମର ଅଳ୍ପ-କାଳ ମଧ୍ୟରେ ସେ ପିତାମାତାଙ୍କୁ ହରାଇ ନିଜର ବଡ଼ବାପାଙ୍କ ଆଦର ଓ ଯତ୍ନରେ ଲାଳିତ ପାଳିତ ହୋଇଥିଲେ ।

ଶୈଶବ ଅତିକ୍ରମ କରି ବାଲ୍ୟଜୀବନରେ ଉପନୀତ ହେବାରୁ ସୁନ୍ଦର ଗ୍ରାମ୍ୟ ପାଠଶାଳାକୁ ପ୍ରେରିତ ହେଲେ । କିନ୍ତୁ ବିଦ୍ୟାଶିକ୍ଷା ପ୍ରତି ତାଙ୍କର ବିଶେଷ ମନୋଯୋଗ ନ ଥିଲା । ଅନେକ ସମୟରେ ସେ ଗ୍ରାମର ବାଳକମାନଙ୍କୁ ସଙ୍ଗରେ ନେଇ ନିକଟବର୍ତ୍ତୀ ଜଙ୍ଗଲରେ କ୍ରୀଡ଼ା ଓ ଶିକାର କରିବାରେ ସମୟ କ୍ଷେପଣ କରୁ-ଥିଲେ । ସେ ସର୍ବଦା ବାଳକମାନଙ୍କ ମଧ୍ୟରେ ନେତୃତ୍ୱ ଗ୍ରହଣ କରୁଥିଲେ । ବିଦ୍ୟାଶିକ୍ଷା ପ୍ରତି ତାଙ୍କର ଆଦର ନ ଥିଲେ ହେଁ କେତେକ ମାନବିକ ସଦ୍‌ଗୁଣ ତାଙ୍କଠାରେ ବିଶେଷ ଭାବରେ ପରିଦୃଷ୍ଟ ହେଉଥିଲା । ଦୀନ ଦରିଦ୍ରମାନଙ୍କର ଦୁରବସ୍ଥା ଦେଖିବା

ମାନେ ତାଙ୍କର ହୃଦୟ ଦୟାରେ ବିଗଳିତ ହୋଇ ଯାଉଥିଲା । କୌଣସି ଅନ୍ୟାୟ କାର୍ଯ୍ୟ ଦେଖିଲେ ତାର ପ୍ରତିବାଦ କରିବାକୁ ସେ ଲବମାତ୍ର ଭୀତ ହେଉ ନ ଥିଲେ । ସତ୍ୟ, ନ୍ୟାୟ, ଅହିଂସା ପ୍ରଭୃତିର ମାହାତ୍ମ୍ୟ ଗ୍ରାମବାସୀଙ୍କ ମଧ୍ୟରେ ପ୍ରଚାର କରିବା ତାଙ୍କର ପ୍ରଧାନ କର୍ମ ଥିଲା । କାହାରିକୁ ସେ କେବେହେଲେ ଘୃଣା କରୁ ନ ଥିଲେ । ପିତୃମାତୃହୀନ ବାଳକର ଏ ପ୍ରକାର ଆଚରଣ ଦେଖି ଲୋକେ ଭାବୁଥିଲେ—ଏ ପିଲାଟି ନିଶ୍ଚୟ ଦିନେ ଜଣେ ବଡ଼ଲୋକ ହେବ । ତୁଳସୀ ଦୁ ପତ୍ରରୁ ବାସେ । ପିଲାଟିଦିନୁ ଯେ ଏଡ଼େ ପରୋପକାରୀ, ଶାନ୍ତ, ଧୀର, ସେ ବଡ଼ ହେଲେ ଜଗତର କେତେ ଉପକାର ନ କରିବ ?

---

## —ସୈନିକ ଜୀବନ—

ବୟସର ବୃଦ୍ଧି ସଙ୍ଗେ ସଙ୍ଗେ ତାହାଙ୍କର ଶାରୀରିକ ଓ ମାନସିକ ଶକ୍ତିର ବିକାଶ ଦେଖାଗଲା । ଯେ କୌଣସି ପ୍ରକାରେ ଗ୍ରାମ୍ୟ ପାଠଶାଳାର ଶିକ୍ଷା ସମାପ୍ତ କରି ସେ କର୍ମକ୍ଷେତ୍ରରେ ପ୍ରବେଶ କଲେ । ସେ ବିବାହ ନ କରି ବ୍ରହ୍ମଚର୍ଯ୍ୟ ବ୍ରତ ଅବଲମ୍ବନ କରୁଥିଲେ । ପ୍ରଥମତଃ ସେ ଅଠଗଡ଼ ରାଜାଙ୍କର ସୈନିକ ବିଭାଗରେ ପ୍ରବେଶ କଲେ । ଏହି କାର୍ଯ୍ୟରେ ବହୁ ସେ ଏପରି ବିଚକ୍ଷଣତା ପ୍ରଦର୍ଶନ କଲେ ଯେ ଅଳ୍ପକାଳ ମଧ୍ୟରେ ସେ ସେନାପତି ପଦକୁ ଉନ୍ନୀତ ହେଲେ । କ୍ରମେ କ୍ରମେ ତାଙ୍କର ରଣ କୌଶଳ ଓ ବୁଦ୍ଧିର ଖ୍ୟାତି ସମଗ୍ର ଓଡ଼ିଶାରେ ପ୍ରଚାରିତ ହୋଇ-ଗଲା ଓ ସେ ଅନେକ ଗଡ଼ଜାତ ରାଜାଙ୍କର ସେନାପତି ପଦରେ ଆସୀନ ହେଲେ । ସେ ଯେପରି ବୀର, ସେହିପରି କୌଶଳୀ

ଓ ସାହସୀ ଥିଲେ । ତେଣୁ ସେ ଅକ୍ଳେଶରେ ଶତ୍ରୁମାନଙ୍କୁ ବଶୀଭୂତ କରି ପାରୁଥିଲେ ।

ଭଗବାନ ଗୋଟିଏ ମହତ୍ ଉଦ୍ଦେଶ୍ୟ ରଖି ସୁନ୍ଦରଙ୍କୁ ପ୍ରେରଣ କରିଥିଲେ । ତେଣୁ କେଶିଦିନ ପର୍ଯ୍ୟନ୍ତ ତାଙ୍କୁ ସେନା-ପତି ପଦରେ ରଖାଇବା ତାଙ୍କର ଉଦ୍ଦେଶ୍ୟ ନ ଥିଲା । ଅଳ୍ପକାଳ ମଧ୍ୟରେ ଗୋଟିଏ ଘଟନାରେ ତାଙ୍କ ଜୀବନରେ ଅଦ୍ଭୁତ ପରିବର୍ତ୍ତନ ଆସିଥିଲା ।

---

## —ଦୈବୀ ବାଣୀ—

ଦିନେ ସୁନ୍ଦର ଶିକାର କରିବା ଉଦ୍ଦେଶ୍ୟରେ ଡାଲଙ୍ଗପାଡ଼ା କୂଲର ଜଙ୍ଗଲ ମଧ୍ୟକୁ ଯାଇଥିଲେ । ସେ ସେଠାରେ ଗୋଟିଏ ହରିଣ ଦେଖିପାରି ତାହାର ଶରୀରକୁ ଶର ନିକ୍ଷେପ କଲେ । ହରିଣଟି ଶରବିଦ୍ଧ ହୋଇ ଭୂତଳରେ ପଡ଼ିବା ସଙ୍ଗେ ସଙ୍ଗେ ରାମ ନାମ ଉଚ୍ଚାରଣ କଲା । ପଶୁମୁଖରୁ ରାମ ନାମ ଉଚ୍ଚାରିତ ହେବା ଶୁଣି ସୁନ୍ଦର ବିସ୍ମୟରେ ଅଭିଭୂତ ହୋଇ ଗଲେ । ମୂହୂର୍ତ୍ତକ ମଧ୍ୟରେ ଏହି ବିସ୍ମୟକୁ ଶତଗୁଣିତ କରି ତାହାଙ୍କ ସମ୍ମୁଖରେ ଗୋଟିଏ ବିରାଟ ଜ୍ୟୋତିର୍ମୟ ରୂପର ଆବିର୍ଭାବ ହେଲା । ସୁନ୍ଦର ଏହି ଅଦ୍ଭୁତ ଘଟନାବଳୀ ଦେଖି ବିସ୍ମୟରେ ଚିନ୍ତା କରୁଥିବା ଏହି ସମୟରେ ଗୋଟିଏ ଅଶରୀରୀ ବାଣୀ ଗମ୍ଭୀର ସ୍ୱରରେ ଶୁଣାଗଲା—"ହେ ଧର୍ମ ଓ ସତ୍ୟ ପଥର ପଥିକ, ତୁମ୍ଭେ ଏ କେଉଁ ପଥରେ ଗମନ କରୁଛ ? ଏହା ତ ତୁମର ଉପଯୁକ୍ତ ପନ୍ଥା ନୁହେଁ । ବିନା କାରଣରେ ଜୀବହିଂସା କରିବାକୁ କାହିଁକି

ଅଗ୍ରସର ହେଉଛ ? ମୋ ପ୍ରତି ଭକ୍ତି ପ୍ରଦର୍ଶନ କର, ନିଶ୍ଚୟ ମୋର ଆଶୀର୍ବାଦ ଲାଭ କରି ପାରିବ ।”

ମହାପୁରୁଷମାନଙ୍କ ଜୀବନରେ ଏହିପରି ଗୋଟିଏ ଗୋଟିଏ ଘଟଣା ଘଟି ସେମାନଙ୍କ ଜୀବନର ଗତିପଥକୁ ପରିବର୍ତ୍ତିତ କରି ଦେଇଥିବା ବିରଳ ନୁହେଁ । କେତୋଟି ଘଟଣା ଦେଖି ରାଜପୁତ୍ର ସିଦ୍ଧାର୍ଥ ସନ୍ନ୍ୟାସ ଅବଲମ୍ବନ କରିଥିଲେ । ସେଣ୍ଟ୍ ପଲ୍ ଡାମାସ୍କସ୍‌ରେ ଏହିପରି ଏକ ଘଟଣାରେ ନୂତନ ଜୀବନ ଲାଭ କରିଥିଲେ । ତେଣୁ ସାଧୁ ସୁନ୍ଦରଙ୍କ ଜୀବନରେ ଏପରି ଘଟିଥିବା ଅସମ୍ଭବ ବା ଅବିଶ୍ୱାସ୍ୟ ନୁହେଁ ।

ଏହି ଶୂନ୍ୟବାଣୀ ଶୁଣିବା ଦିନଠାରୁ ସୁନ୍ଦର ଚିନ୍ତାକୁଳ ହୋଇ ପଡ଼ିଲେ । ବୀର ଯୁବକୋଚିତ ମୃଗୟାଦିରେ ତାଙ୍କର ଆଉ ଅନୁରାଗ ରହିଲା ନାହିଁ । ସେ ଧନୁ, ଶର, ବନ୍ଧୁକ, ଗୁଳି ପ୍ରଭୃତି ତ୍ୟାଗ କରି ଆତ୍ମାର ଶାନ୍ତି ଅନ୍ୱେଷଣ କରିବାକୁ ଲାଗିଲେ ।

---

## —କୁଜୀ-ବର ଆଶ୍ରମ—

କଟକ ଜିଲ୍ଲାର ଚଉଦ୍ୱାର ନିକଟରେ କୁଜ୍ଜା-ବର ନାମକ ଗୋଟିଏ ବଟବୃକ୍ଷ ଥିଲା । ଏହା ନିକଟରେ ଶାଳଗାଁ, ଭୈରୀପୁର, ଟାଙ୍ଗୀ, ବଙ୍କୁବୋଟ ପ୍ରଭୃତି ଗ୍ରାମମାନ ଅବସ୍ଥିତ । ଏହି ବଟ ବୃକ୍ଷର ନିକଟବର୍ତ୍ତୀ ଗ୍ରାମଟି କୁଜୀ-ବର ଗ୍ରାମ ନାମରେ ଖ୍ୟାତ । ସୁନ୍ଦର ସୈନିକ କାର୍ଯ୍ୟ ତ୍ୟାଗ କରି ଏହି କୁଜ୍ଜା-ବର ବୃକ୍ଷ ମୂଳରେ କଠିନ ତପସ୍ୟାରେ ନିଯୁକ୍ତ ହେଲେ । ବହୁଶତ ବର୍ଷ ପୂର୍ବେ

ରାଜପୁତ୍ର ସିଦ୍ଧାର୍ଥ ମଧ୍ୟ ବୋଧିଦ୍ରୁମ ତଳେ ଏହିପରି ତପସ୍ୟାରେ ନିମଗ୍ନ ରହି ଜ୍ଞାନ ଲାଭ କରିଥିଲେ । ସେ କେବଳ ଯେ ସମସ୍ତ ସମୟ ତପସ୍ୟାରେ ନିଯୁକ୍ତ ଥିଲେ ତା ନୁହେଁ, ତପସ୍ୟା ସଙ୍ଗେ ସଙ୍ଗେ ସେ ଭାଗବତ, ରାମାୟଣ, ମହାଭାରତ, ବେଦ, ଉପନିଷଦ, ସାଙ୍ଖ୍ୟ, ମୀମାଂସା ପ୍ରଭୃତି ହିନ୍ଦୁଧର୍ମ ଓ ଦର୍ଶନ ଶାସ୍ତ୍ର ମଧ୍ୟ ଅଧ୍ୟୟନ କଲେ । ଏହିସବୁ ଗ୍ରନ୍ଥ ପାଠ କରିବା ଫଳରେ ତାଙ୍କର ଏହି ବିଶ୍ୱାସ ଦୃଢ଼ୀଭୂତ ହେଲା ଯେ ସମସ୍ତ ଧର୍ମର ମୌଳିକ ନୀତି ଅଭିନ୍ନ । ସେ ଈଶ୍ୱରଙ୍କଠାରେ ଦୃଢ଼ବିଶ୍ୱାସ ରଖି ମାନବସମାଜର ମଙ୍ଗଳ ସାଧନରେ ବ୍ରତୀ ହେଲେ । ତାହାଙ୍କର ଅଲୌକିକ ଜ୍ଞାନ ଓ ସଦାଚରଣ କ୍ରମେ ଲୋକସାଧାରଣଙ୍କର ଦୃଷ୍ଟି ଆକର୍ଷଣ କଲା । ତାହାଙ୍କର ପରୋପକାର ବ୍ରତ କୌଣସି ନିର୍ଦ୍ଦିଷ୍ଟ ଧର୍ମ ବା ଗୋଷ୍ଠୀ ମଧ୍ୟରେ ଆବଦ୍ଧ ନଥିଲା । ତେଣୁ ଜାତି ଧର୍ମ ନିର୍ବିଶେଷରେ ଲୋକେ ତାହାଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ । ସେ ସମୟର ମରହଟ୍ଟା ଶାସକ ତଥା ତାଙ୍କ ସାମନ୍ତ ରାଜନ୍ୟବର୍ଗ ସାଧୁଙ୍କର ଶିଷ୍ୟତ୍ୱ ସ୍ୱୀକାର କଲେ । ସେ ଶିଷ୍ୟମାନଙ୍କଠାରୁ କୌଣସି ଦାନ ଗ୍ରହଣ କରୁ ନ ଥିଲେ । ରାଜା ମହାରାଜାମାନେ ତାହାଙ୍କୁ ଦାନ ଦେବାକୁ ଇଚ୍ଛା ପ୍ରକାଶ କଲେ, ସେ କହୁଥିଲେ—'ଧନ ସମ୍ପଦ ଅନିତ୍ୟ । ଏହି ଅନିତ୍ୟ ଜଗତରେ ଜ୍ଞାନହିଁ କେବଳ ନିତ୍ୟ । ତେଣୁ କୁଞ୍ଜ-ବର ଆଶ୍ରମ ଜ୍ଞାନର ଆଶ୍ରମ ହେବ । ଧନର ଆଶ୍ରମ ହେବ ନାହିଁ ।'

ସେ ସମୟରେ ପୁରୀରେ ଅଳ୍ପକାଳ ପରେ ଅନେକ ମହନ୍ତ ଥିଲେ ଏବଂ ଭକ୍ତମାନେ ସେମାନଙ୍କ ମଠକୁ ଯଥେଷ୍ଟ ସମ୍ପତ୍ତି ଦାନ କରି ଦେଉଥିଲେ । କିନ୍ତୁ ଏହି ମଠମାନଙ୍କରେ ଧନ

ସଙ୍ଗେ ନାନା ଅନୀତି ପ୍ରବେଶ କରି ମଠ ବାଡ଼ିମାନଙ୍କୁ ଜ୍ଞାନରେ ଅଲୋକିତ କରିବା ପରିବର୍ତ୍ତିରେ ନାନା ପାପ ଓ ଅନ୍ୟାୟରେ କଳୁଷିତ କରୁଥିଲା । ସାଧୁ ସୁନ୍ଦର ଦାସ ଏ ପ୍ରକାର ମଠକୁ ଅନ୍ତରରୁ ଘୃଣା କରୁଥିଲେ । ସାଧୁ ସୁନ୍ଦର ଦାସ କୁଞ୍ଜ-ବର ନିକଟରେ ଗୋଟିଏ ଆଶ୍ରମ ସ୍ଥାପନ କରି ସେଠାରେ ବାସ କରୁଥିଲେ । କୁଞ୍ଜ-ବର ଗୋଟିଏ ଅଳ୍ପ ଉଚ୍ଚ ବୃକ୍ଷ ଥିଲା ଓ ତାହାର ଶାଖା ପ୍ରଶାଖା ବହୁଦୂରକୁ ବିସ୍ତୃତ ହୋଇ ଛାୟା ପ୍ରଦାନ କରୁଥିଲା । ଏହି ସ୍ଥାନଟି ନିର୍ଜନ ଓ ଈଶ୍ୱର ଆରାଧନାର ଅନୁକୂଳ ଥିବାରୁ ସାଧୁ ସୁନ୍ଦର ଦାସ ନିଜର ସାଧନା ଓ ଧର୍ମ ପ୍ରଚାର ନିମନ୍ତେ ଏହି ସ୍ଥାନଟିକୁ ବାଛି ନେଇଥିଲେ । ଏହି ଆଶ୍ରମର ଅତି ଅଳ୍ପ ଦୂରରେ ଗୋଟିଏ ପ୍ରକାଣ୍ଡ ପୁଷ୍କରଣୀ ଥିଲା । କଥିତ ଅଛି ଯେ ଏହି ପୁଷ୍କରଣୀଟି ମହାରାଜା ଜନ୍ମେଜୟଙ୍କର କୀର୍ତ୍ତି । ଗୋଟିଏ କ୍ଷୁଦ୍ର ନଦୀ କପିଳାସରୁ ନିର୍ଗତ ହୋଇ ଆଶ୍ରମର ତିନି ଦିଗକୁ ବେଷ୍ଟନ କରି ପ୍ରବାହିତ ହେଉଥିଲା । ଫଳତଃ କୁଞ୍ଜ-ବରର ପ୍ରାକୃତିକ ଦୃଶ୍ୟ ଅତ୍ୟନ୍ତ ରମଣୀୟ । ଏହି ମନୋହର ପ୍ରାକୃତିକ ଦୃଶ୍ୟ ମଧ୍ୟରେ ସାଧୁ ସୁନ୍ଦର ଦାସ ନିଜକୁ ଭଗବତ୍ ଚିନ୍ତାରେ ବୁଡ଼ାଇ ଦେଉଥିଲେ ।

ନିକଟବର୍ତ୍ତୀ ଗ୍ରାମମାନଙ୍କରୁ ସକଳ ଶ୍ରେଣୀର ଲୋକ ସାଧୁ ସୁନ୍ଦର ଦାସଙ୍କ ନିକଟରେ ଉପସ୍ଥିତ ହୋଇ ତାଙ୍କ ଶ୍ରୀମୁଖରୁ ଧର୍ମତତ୍ତ୍ୱ ଶ୍ରବଣ କରୁଥିଲେ । ଦିନକୁ ଦିନ ତାହାଙ୍କର ଖ୍ୟାତି ବଢ଼ିବାକୁ ଲାଗିଲା ଏବଂ ଓଡ଼ିଶା ବାହାରେ ମଧ୍ୟ ସାଧୁ ସୁନ୍ଦର ଦାସ-ପରିଚିତ ହେଲେ । ଦୀନ, ଦରିଦ୍ରମାନଙ୍କ ପାଇଁ ଆଶ୍ରମର ଦ୍ୱାର ସର୍ବଦା ଉନ୍ମୁକ୍ତ ଥିଲା । ଭକ୍ତମାନେ ଆନନ୍ଦିତ ହୃଦୟରେ ଯାହା-

କିଛି ଅର୍ପଣ କରୁଥିଲେ, ସେ ସମସ୍ତ ଦୀନ ଦରିଦ୍ରଙ୍କ ସେବାରେ ବ୍ୟୟିତ ହେଉଥିଲା । ତାହାଙ୍କର ପବିତ୍ର ଧର୍ମୋପଦେଶ ଶୁଣି ଶତ ଶତ ନରନାରୀ ପରମ ଆପ୍ୟାୟିତ ହେଉଥିଲେ ଏବଂ ସାଧୁଙ୍କୁ ସ୍ୱୟଂ ଭଗବାନଙ୍କର ଅବତାର ବୋଲି ମନେ କରୁଥିଲେ । ଆଶ୍ରମର ଶାନ୍ତ ଓ ଅହିଂସାପୂର୍ଣ୍ଣ ନୀତି ଜନସାଧାରଣଙ୍କୁ ବିଶେଷଭାବରେ ପ୍ରଭାବିତ କରୁଥିଲା ।

---

## — କୁଜୀ-ବର ଯଜ୍ଞ —

ପ୍ରତିବର୍ଷ ବୈଶାଖମାସ ଅକ୍ଷୟ ତୃତୀୟାଠାରୁ ସାତଦିନ ବ୍ୟାପୀ ଗୋଟିଏ ଯଜ୍ଞ ଏଠାରେ ଅନୁଷ୍ଠିତ ହେଉଥିଲା । ଏହି ଅହୋରାତ୍ରବ୍ୟାପୀ ସାପ୍ତାହିକ ଯଜ୍ଞରେ ସାଧୁ ଲୋକସାଧାରଣଙ୍କୁ ସତ୍ୟ ଓ ଧର୍ମ ବିଷୟରେ ଉପଦେଶ ପ୍ରଦାନ କରୁଥିଲେ । ପ୍ରତ୍ୟହ ଯଜ୍ଞ କୁଣ୍ଡରେ କୋଡ଼ିଏ ସେର ପର୍ଯ୍ୟନ୍ତ ଘୃତ ଆହୁତି ଦିଆଯାଉଥିଲା । ଦରିଦ୍ରମାନଙ୍କୁ ଅନ୍ନ, ବସ୍ତ୍ର ପ୍ରଭୃତି ଦାନ କରାଯାଉଥିଲା ଏବଂ ପ୍ରତ୍ୟହ ସହସ୍ର ସହସ୍ର ଲୋକ ଅପର୍ଯ୍ୟାପ୍ତ ଭୋଜନ ପାଉଥିଲେ । ବିବିଧ ବାଦ୍ୟର ନିନାଦରେ ସ୍ଥାନଟି ମୁଖରିତ ହୋଇ ଉଠୁଥିଲା । ଭାରତର ନାନା ସ୍ଥାନରୁ ସାଧୁ ସନ୍ନ୍ୟାସୀ ତଥା ରାଜା ମହାରାଜା ଏହି ଯଜ୍ଞ ଦର୍ଶନ କରିବାକୁ କୁଜୀ-ବରଠାରେ ସମବେତ ହେଉଥିଲେ । ଭକ୍ତମାନେ ଯାହା କିଛି ଭକ୍ତି ସହକାରେ ଅର୍ପଣ କରନ୍ତି, ସେ ସମସ୍ତ ଯଜ୍ଞ କାର୍ଯ୍ୟରେ ଓ ଯାଚକମାନଙ୍କୁ ଦାନ କରିବାରେ ବ୍ୟୟିତ ହେଉଥିଲା । ସାଧୁଙ୍କର ବିଶ୍ୱାସ ଥିଲା ଯେ, ଯଜ୍ଞଦ୍ୱାରା ଜଗତର ମଙ୍ଗଳ ସାଧିତ ହୋଇଥାଏ । ଏହି ସମୟରେ ସାଧୁ ସୁନ୍ଦର ଯଜ୍ଞ ବେଦିରେ ଦଣ୍ଡାୟମାନ ହୋଇ

ଉପସ୍ଥିତ ଧର୍ମପ୍ରାଣ ଜନତାଙ୍କୁ ଉପଦେଶ ଦେଇ କହୁଥିଲେ ଯେ ଜଗତରେ ଭଗବାନହିଁ ସତ୍ୟ । ତାହାଙ୍କର ସତ୍ତା ପ୍ରତ୍ୟେକ ପ୍ରାଣିଠାରେ ବିଦ୍ୟମାନ । ତେଣୁ ପ୍ରାଣୀ ମାନେ ଈଶ୍ୱରଙ୍କର ପ୍ରତୀକ । ପଶୁ, ପକ୍ଷୀ, କୀଟ, ପତଙ୍ଗ ଏପରିକି ବୃକ୍ଷଲତାମାନଙ୍କର ବିନାଶ ସାଧନ କରିବା ପାପଜନକ । ଆମ୍ଭମାନଙ୍କଠାରେ ଯେଉଁ ଭଗବାନ ଅଛନ୍ତି ସେମାନଙ୍କଠାରେ ମଧ୍ୟ ସେହି ଭଗବାନ ଅଛନ୍ତି । ଅତଏବ ଅହିଂସା ବ୍ରତ ସର୍ବଦା ପାଳନୀୟ ।

କେବଳ ଆଗନ୍ତୁକ ଗ୍ରାମବାସିମାନଙ୍କୁ ଉପଦେଶ ଦେବା ସାଧୁଙ୍କର ଲକ୍ଷ୍ୟ ନ ଥିଲା । ଏହାଙ୍କ ଆଶ୍ରମରେ ଗୋଟିଏ ବିଦ୍ୟାଳୟ ଥିଲା । ଏହି ବିଦ୍ୟାଳୟରେ ପ୍ରାୟ ପାଞ୍ଚଶତ ଛାତ୍ର ବେଦ, ବେଦାନ୍ତ, ପୁରାଣ, ଶାସ୍ତ୍ର ପ୍ରଭୃତି ଶିକ୍ଷା କରୁଥିଲେ । ସେମାନେ ଶାସ୍ତ୍ର ଅଧ୍ୟୟନ କରି ଯେଉଁ ସବୁ ସତ୍ୟ ଉପଲବ୍ଧି କରୁଥିଲେ, ସେ ସବୁକୁ ଜନସମାଜରେ ପ୍ରଚାର କରୁଥିଲେ । ଅତି ପ୍ରାଚୀନ କାଳରେ ତକ୍ଷଶିଳା, ନାଳନ୍ଦା ବା ଉତ୍କଳର ପୁଷ୍ପଗିରି ପ୍ରଭୃତିରେ ଯେପରି ବିଖ୍ୟାତ ବିଦ୍ୟାଳୟମାନ ଜ୍ଞାନ ବିତରଣ କରୁଥିଲା, ସାଧୁ ସୁନ୍ଦରଙ୍କ ଆଶ୍ରମଟି ମଧ୍ୟ ସେହିପରି ଜ୍ଞାନ ପ୍ରଚାରର ଗୋଟିଏ ପ୍ରଧାନ ପୀଠସ୍ଥଳୀ ଥିଲା ।

ସାଧୁଙ୍କର ଅଗାଧ ପାଣ୍ଡିତ୍ୟ, ଧର୍ମ, ଜ୍ଞାନ ଓ ନ୍ୟାୟ ବିଚାରରେ ଲୋକସାଧାରଣଙ୍କର ପ୍ରଗାଢ଼ ବିଶ୍ୱାସ ଥିଲା । ତାଙ୍କ ଉପଦେଶର ମୂଳ ମନ୍ତ୍ର ଥିଲା ଯେ ଜଗତର ସବୁ ଧର୍ମ ସମାନ । ଈଶ୍ୱର ସମଗ୍ର ଜଗତର ପିତା ଏବଂ ଆମ୍ଭେମାନେ ତାଙ୍କର ପୁତ୍ର କନ୍ୟା । ସେ ଜଗତର ସର୍ବତ୍ର ବିଦ୍ୟମାନ । ଉପଦେଶ ଦେବା-ବେଳେ ସେ ଭାଗବତ, ରାମାୟଣ, ମହାଭାରତ ପ୍ରଭୃତି ଧର୍ମଗ୍ରନ୍ଥ

ଓ ପୁରାଣମାନଙ୍କରୁ ଉଦାହରଣମାନ ଦେଉଥିଲେ । ଏହା ଫଳରେ ତାଙ୍କର ଉପଦେଶଗୁଡ଼ିକ ଶ୍ରୋତାମାନଙ୍କ ହୃଦୟରେ ଦୃଢ଼ୀଭୂତ ହେଉଥିଲା ।

---

## —ଖ୍ରୀଷ୍ଟିଆନ୍ ପାଦ୍ରୀ ଓ ସାଧୁ ସୁନ୍ଦର—

୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ଓଡ଼ିଶା ଅଧିକାର କଲେ । ଇଂରେଜମାନଙ୍କ ଓଡ଼ିଶା ଅଧିକାର ପରେ ପରେ ଦଳେ ଇଂରେଜ ଖ୍ରୀଷ୍ଟଧର୍ମ ପ୍ରଚାରକ ଓଡ଼ିଶାରେ ଖ୍ରୀଷ୍ଟଧର୍ମ ପ୍ରଚାରଲାଗି ଆସିଥିଲେ । ସେତେବେଳକୁ ବଙ୍ଗଳାର ଶ୍ରୀରାମପୁରରେ ଖ୍ରୀଷ୍ଟିୟାନ ଧର୍ମପ୍ରଚାରର ଗୋଟିଏ କେନ୍ଦ୍ର ଥିଲା । ଶ୍ରୀରାମପୁରର କେତେକ ପାଦ୍ରୀ ସମୁଦ୍ର ପଥରେ ଆସି ପଞ୍ଚାମୁଣ୍ଡାଇବାଟେ ୧୮୨୨ ଖ୍ରୀଷ୍ଟାବ୍ଦ ଫେବୃୟାରୀ ୧୨ ତାରିଖ ଦିନ କଟକରେ ଉପସ୍ଥିତ ହେଲେ । ସେମାନେ କଟକରେ ବହୁ ଖ୍ରୀଷ୍ଟିୟାନ ଧର୍ମର ନୀତି ପ୍ରଚାର କରିବାରେ ଲାଗିଲେ । ସେମାନେ ମହାପୁରୁଷ ସୁନ୍ଦର ଦାସଙ୍କର ଅଦ୍ଭୁତ ଶକ୍ତି ଓ ପ୍ରଭାବ ବିଷୟ ଶୁଣିପାରି ତାହାଙ୍କ ସହିତ ସାକ୍ଷାତ କରିବାକୁ ଇଚ୍ଛୁକ ହେଲେ । ସୁନ୍ଦର ଦାସ ମଧ୍ୟ ଏଥିପୂର୍ବରୁ ଖ୍ରୀଷ୍ଟିଅନ ଧର୍ମଗ୍ରନ୍ଥ ବାଇବେଲ ଉତ୍ତମରୂପେ ପାଠ କରି ଶିଷ୍ୟମାନଙ୍କ ମଧ୍ୟରେ ତାହାର ଆଲୋଚନା କରୁଥିଲେ । ପାଦ୍ରୀମାନଙ୍କଠାରୁ ଖ୍ରୀଷ୍ଟିୟଧର୍ମର ତତ୍ତ୍ୱ ଜାଣିବା ନିମନ୍ତେ ସେ ଶିଷ୍ୟମାନଙ୍କଦ୍ୱାରା ପାଦ୍ରୀମାନଙ୍କୁ ନିମନ୍ତ୍ରଣ କରି ପଠାଇଲେ ।

୧୮୨୬ ମସିହା ଅକ୍ଟୋବର ୯ ତାରିଖ ଦିନ ସାଧୁ ସୁନ୍ଦର ଦାସଙ୍କର ୧୧ ଜଣ ଶିଷ୍ୟ ପାଦ୍ରୀମାନଙ୍କ ନିକଟରେ ଉପସ୍ଥିତ ହୋଇ ଆଶ୍ରମ ଦର୍ଶନ କରିବା ନିମିତ୍ତ ସେମାନଙ୍କୁ ନିମନ୍ତ୍ରଣ

କଲେ । ପାଦ୍ରୀସାହେବମାନେ ଆଗ୍ରହରେ ସାଧୁଙ୍କର ନିମନ୍ତ୍ରଣ ଗ୍ରହଣ କଲେ ଓ ତତ୍‌ପରଦିନ କୁଜୀ-ବର ଯିବେ ବୋଲି ଜଣାଇଲେ । ଦଶ ଜଣ ଶିଷ୍ୟ ଆଶ୍ରମକୁ ଫେରିଗଲେ ଓ ସାହେବମାନଙ୍କୁ ପଥ ଦେଖାଇବା ପାଇଁ ଜଣେ ଶିଷ୍ୟ ସେଠାରେ ରହିଲେ । ତତ୍‌ପରଦିନ ପ୍ରାତଃକାଳରେ ଉକ୍ତ ଶିଷ୍ୟଙ୍କ ସହିତ ପାଦ୍ରୀମାନେ ଆଶ୍ରମ ଅଭିମୁଖରେ ଗମନ କଲେ । ଏହି ପାଦ୍ରୀ-ମାନଙ୍କ ମଧ୍ୟରେ ସ୍ଵଟନ୍ ସାହେବଙ୍କ ନାମ ବିଶେଷଭାବରେ ଉଲ୍ଲେଖଯୋଗ୍ୟ । ସେମାନେ ମହାନଦୀ ପାର ହୋଇ ପ୍ରାୟ ଦଶ ମାଇଲ ପଥ ଅତିକ୍ରମ କଲା ପରେ କୁଜୀ-ବର ନିକଟରେ ପହଞ୍ଚିଲେ । ସେତେବେଳକୁ ସୁନ୍ଦର ଦାସ ସାହେବମାନଙ୍କୁ ଅପେକ୍ଷା କରି ରହିଥିଲେ । ସେ ସାହେବମାନଙ୍କୁ ପ୍ରଣାମ କଲେ ଓ ସାହେବ-ମାନେ ମଧ୍ୟ ପାଶ୍ଚାତ୍ୟ ରୀତିରେ ସାଧୁଙ୍କର କରମର୍ଦ୍ଦନ କଲେ । ସ୍ଵଟନ୍ ସାହେବ ଏହି ମଠ ଦର୍ଶନର ଯେଉଁ ବିବରଣୀ ଲେଖି ଯାଇଅଛନ୍ତି ସେଥିରୁ ଜଣାଯାଏ ଯେ—ବାବାଜୀଙ୍କ ଶରୀର ଅତିଶୟ ଗୌରବର୍ଣ୍ଣ, ତାଙ୍କର ଚକ୍ଷୁ ଉଜ୍ଜ୍ୱଳ ଏବଂ ଉଚ୍ଚତା ମଧ୍ୟମ ଥିଲା । ତାହାଙ୍କର ଶରୀର ସ୍ଥୂଳ ଓ ଓଷ୍ଠ ହାସ୍ୟମୟ । ତାହାଙ୍କର ମୁଖମଣ୍ଡଳ ବିଜ୍ଞତାର ପରିଚୟ ଦେଉଥିଲା । ସାଧାରଣ ବାବାଜୀଙ୍କ ପରି ତାଙ୍କର ଶରୀର ଭସ୍ମଲିପ୍ତ ନ ଥିଲା କିମ୍ବା ସେ ମସ୍ତକରେ ଜଟାଧାରଣ କରି ନ ଥିଲେ । ତାଙ୍କର କଟି ଦେଶରେ ଗୋଟିଏ ଲୌହ ଜଞ୍ଜିର ଥିଲା । ତାହାର ସାହାଯ୍ୟରେ ସେ ଖଣ୍ଡିଏ ମାତ୍ର କୌପୀନ ପରିଧାନ କରୁଥିଲେ । ସେତେବେଳକୁ ତାଙ୍କର ବୟସ ଶତାଧିକ ବର୍ଷ ହେଲେହେଁ ଆକୃତିରୁ ସେ ପଚାଶ ବର୍ଷ ବୟସ୍କ ପରି ଅନୁମିତ ହେଉଥିଲେ । ତାହାଙ୍କର ରୂପ ଅତି ଲାବଣ୍ୟମୟ ଥିଲା ।

---

## —ହିନ୍ଦୁଧର୍ମ ଓ ଖ୍ରୀଷ୍ଟିଆନ ଧର୍ମ—

ଏହାପରେ ସାଧୁ ଓ ପାଦ୍ରୀମାନଙ୍କ ମଧ୍ୟରେ ଧର୍ମର ଆଲୋଚନା ଚାଲିଲା । ପାଦ୍ରୀମାନେ ହିନ୍ଦୁଜାତିର ଅସ୍ପୃଶ୍ୟତାକୁ ଲକ୍ଷ୍ୟ କରି ପଚାରିଲେ—"ଯେଉଁ ହିନ୍ଦୁଧର୍ମରେ ସ୍ପୃଶ୍ୟ ଓ ଅସ୍ପୃଶ୍ୟ ଅଛନ୍ତି, ସେହି ହିନ୍ଦୁଧର୍ମ କପରି ସବୁ ଧର୍ମର ଐକ୍ୟ ସ୍ୱୀକାର କରିପାରେ ?" ଏହାର ଉତ୍ତରରେ ସାଧୁ କହିଲେ ଯେ—ସ୍ପୃଶ୍ୟ, ଅସ୍ପୃଶ୍ୟ ଭେଦ ମୂଳରେ ମନୁଷ୍ୟର ଅଜ୍ଞାନତା ନିହିତ ଅଛି । ଯେ ଭଗବଦ୍ ଜ୍ଞାନ ପାଇଥାଏ, ତାହା ନିକଟରେ ସ୍ପୃଶ୍ୟ ଅସ୍ପୃଶ୍ୟ କିଛି ନାହିଁ । ସୂର୍ଯ୍ୟ କୌଣସି ଭେଦ ନ କରି ସକଳ ପଦାର୍ଥକୁ ଉତ୍ତାପ ଓ ଆଲୋକ ଦିଏ । ଦିବ୍ୟଜ୍ଞାନ ପାଇଲେ ମନୁଷ୍ୟର ଭେଦଭାବ ଦୂର ହେବ । ହିନ୍ଦୁଧର୍ମ ଜ୍ଞାନକୁ ଉଚ୍ଚସ୍ଥାନ ଦେଇ ଆସିଅଛି । 'ବସୁଧୈବ କୁଟୁମ୍ବକମ୍' ହିନ୍ଦୁର ଆଦର୍ଶ । ଜଗନ୍ନାଥ ଆମ୍ଭମାନଙ୍କର ପ୍ରଧାନ ଦେବତା । ଜାତି ନିର୍ବିଶେଷରେ ଲୋକେ ଜଗନ୍ନାଥଙ୍କର ପ୍ରସାଦ ଭୋଗ କରନ୍ତି । ତେଣୁ ହିନ୍ଦୁଧର୍ମ ସବୁ ଧର୍ମର ଐକ୍ୟକୁ ଘୋଷଣା କରୁଛି ।

ବାଇବେଲ୍‌ରେ ଲିଖିତ ଦଶ ଆଦେଶ(Ten Commandments) ବିଷୟରେ ପାଦ୍ରୀମାନେ ସାଧୁଙ୍କର ମତ ପଚାରିବାରୁ ସେ କହିଲେ, ବାଇବେଲ୍‌ର ଦଶ ଆଦେଶ ଓ ହିନ୍ଦୁ ଧର୍ମର ମୌଳିକ ନୀତି ମଧ୍ୟରେ କୌଣସି ବିରୋଧ ନାହିଁ । ଜନସାଧାରଣ ଏହି ନୀତିକୁ ପାଳନ କଲେ, ସେମାନେ ପରସ୍ପରକୁ ପ୍ରେମ କରିବେ ଏବଂ ଏହି ପ୍ରେମ ଭଗବାନଙ୍କର ପାଦପଦ୍ମ ଲାଭ କରିବାର ଏକମାତ୍ର ପନ୍ଥା ।

ଯୀଶୁଖ୍ରୀଷ୍ଟଙ୍କର କ୍ରୁଶରେ ପ୍ରାଣଦାନ୍ କରିବା ବିଷୟରେ ସାଧୁ ମତ ପ୍ରକାଶ କଲେ ଯେ, ଏହାଦ୍ୱାରା ଯୀଶୁଙ୍କର ମହାମାନବତା ଏବଂ ଗୌରବ ପ୍ରକଟିତ ହୋଇଛି ।

ଏହିପରି ଆଲୋଚନା ଫଳରେ ପାଦ୍ରୀମାନେ ଅତ୍ୟନ୍ତ ପ୍ରୀତ ହେଲେ ଏବଂ ଆଶ୍ରମରେ ପ୍ରସାଦ ସେବନ କରି କଟକ ଫେରି ଆସିଲେ ।

ଏହାପରେ ପାଦ୍ରୀମାନେ ଅନେକବାର ସାଧୁଙ୍କ ଆଶ୍ରମକୁ ଯାଇଥିଲେ ଏବଂ ସାଧୁଙ୍କର ପବିତ୍ର ଜୀବନଯାପନ, ଈଶ୍ୱର ଉପାସନା ଓ ଧ୍ୟାନ ପ୍ରଭୃତି ଦେଖି ସନ୍ତୋଷ ଲାଭ କରିଥିଲେ । ଏଥିପୂର୍ବରୁ ସାହେବମାନଙ୍କର ଧାରଣା ଥିଲା ଯେ ହିନ୍ଦୁମାନେ ବହୁ ଦେବଦେବୀ ମୂର୍ତ୍ତି ପୂଜା କରନ୍ତି । କିନ୍ତୁ ସାଧୁଙ୍କର ଆଶ୍ରମରେ ସେମାନେ କୌଣସି ମୂର୍ତ୍ତି ଦେଖିବାକୁ ପାଇ ନ ଥିଲେ । ଏହି ଆଶ୍ରମରେ ଧର୍ମ ସମ୍ବନ୍ଧୀୟ ଅନେକ ପୋଥି ଥିଲା । ସାଧୁ ତଥା ତାଙ୍କର ଶିଷ୍ୟମାନେ ଏହି ସବୁ ପୋଥି ବହୁତ ସମୟ ପାଠ କରୁଥିଲେ । ପାଦ୍ରୀମାନେ ସାଧୁଙ୍କର ବିଦ୍ୟାନୁରାଗ ଓ ଶିକ୍ଷାପ୍ରୀତି ଦେଖି ଅତ୍ୟନ୍ତ ସନ୍ତୁଷ୍ଟ ହୋଇଥିଲେ ।

ଏହି ମିଶନେରୀମାନଙ୍କ ଯତ୍ନରେ ଓଡ଼ିଶାରେ ପ୍ରଥମ ଉଚ୍ଚ ଇଂରାଜୀ ବିଦ୍ୟାଳୟ ୧୮୪୩ ମସିହାରେ ସ୍ଥାପିତ ହୋଇଥିଲା ଓ ପରେ ଓଡ଼ିଶାର କମିଶନର ରେଭେନ୍ସା ସାହେବଙ୍କ ନାମାନୁସାରେ ଏହାର ନାମ ରେଭେନ୍ସା କଲେଜିୟେଟ୍ ସ୍କୁଲ ହୋଇଥିଲା । ଏହି ଉଚ୍ଚ-ଇଂରାଜୀ ବିଦ୍ୟାଳୟ ସ୍ଥାପନ ବିଷୟରେ ସାଧୁସୁନ୍ଦର ଦାସ ଅନୁକୂଳ ମତ ଦେଇଥିଲେ ଓ ପାଦ୍ରୀମାନଙ୍କୁ ଯଥେଷ୍ଟ ସାହାଯ୍ୟ କରିଥିଲେ ।

---

# —କୁଜୀ-ବର ପତ୍ର—

ଅଷ୍ଟାଦଶ ଶତାବ୍ଦୀ ବେଳକୁ ଓଡ଼ିଶାରେ କୌଣସି ମୁଦ୍ରା-ଯନ୍ତ୍ର ନ ଥିଲା କିମ୍ବା କୌଣସି ସମ୍ବାଦପତ୍ର ପ୍ରକାଶିତ ହେଉ ନ ଥିଲା । ବଙ୍ଗଳାରେ ରାଜା ରାମମୋହନ ରାୟଙ୍କଦ୍ୱାରା 'ସମ୍ବାଦ କୌମୁଦୀ' ପ୍ରକାଶିତ ହେବା ପୂର୍ବରୁ ମଧ୍ୟ ମହାତ୍ମା ସାଧୁ ସୁନ୍ଦର ଦାସ ଓଡ଼ିଶାରେ 'କୁଜୀ-ବର ପତ୍ର' ନାମକ ହାତଲେଖା ସମ୍ବାଦ-ପତ୍ର ପ୍ରକାଶ କରୁଥିଲେ । ଏହି ସମ୍ବାଦପତ୍ରଟି ନିଜେ ସାଧୁଙ୍କଦ୍ୱାରା ସମ୍ପାଦିତ ହେଉଥିଲା ଏବଂ କାଗଜ ଓ ତାଳପତ୍ରରେ ନକଲ କରାଯାଇ ଓଡ଼ିଶା ତଥା ଓଡ଼ିଶା ବାହାରେ ପ୍ରଧାନ ସ୍ଥାନମାନଙ୍କରେ ପ୍ରଚାର କରି ଯାଉଥିଲା । ପତ୍ରିକାଟି ସମ୍ପାଦନ କରିବାରେ ସାଧୁଙ୍କର ଦୁଇଜଣ ପ୍ରଧାନ ଶିଷ୍ୟ ଗଙ୍ଗାଧର ଷଡ଼ଙ୍ଗୀ ଓ ରାମଚନ୍ଦ୍ର ଯାଚକ ସାଧୁଙ୍କୁ ସାହାଯ୍ୟ କରୁଥିଲେ । ଏଥିରେ କେବଳ ଧର୍ମ ସମ୍ବନ୍ଧୀୟ ଆଲୋଚନା ହେଉ ନ ଥିଲା, ଧର୍ମ ସଙ୍ଗେ ସଙ୍ଗେ ସମାଜ ସଂସ୍କାର, ରାଜନୀତି, ଶିକ୍ଷା, କୃଷି, ଶିଳ୍ପ ପ୍ରଭୃତି ବିଷୟରେ ମଧ୍ୟ ଆଲୋଚନା କରାଯାଇଥିଲା । ଏହି ପତ୍ରିକାର ପ୍ରବନ୍ଧଗୁଡ଼ିକ ଅତି ମୂଲ୍ୟବାନ୍ ଓ ସମୟୋପଯୋଗୀ ଥିଲା । ଇଂରେଜମାନେ ଓଡ଼ିଶା ଅଧିକାର କରିଥିଲେ ହେଁ ସେତେବେଳକୁ ଓଡ଼ିଶାରେ ଇଂରେଜୀ ଭାଷାର ପ୍ରସାର ହୋଇ ନଥିଲା । ମିଶନେରୀମାନେ ସାଧୁଙ୍କ କୁଜୀ-ବର ପତ୍ରିକାର ଅନେକ ଅଂଶ ଇଂରେଜୀରେ ଅନୁବାଦ କରି ବିଲାତର ବ୍ୟାପ୍ଟିଷ୍ଟ ମିଶନେରୀ ଜର୍ନାଲ୍ ଓ ବ୍ୟାପ୍ଟିଷ୍ଟ ମିଶନେରୀ ରିପୋର୍ଟକୁ ପଠାଉଥିଲେ, ଏହି ସବୁ ପ୍ରବନ୍ଧ ବିଲାତରେ ସମାଲୋଚିତ ହୋଇ ପ୍ରଶଂସା ଲାଭ କରିଥିଲା ।

ସାଧୁ ନିର୍ଭୀକ ଥିଲେ । ସେ ଇଂରେଜ ଶାସକମାନଙ୍କୁ ମଧ୍ୟ ସମାଲୋଚନା କରିବାକୁ କୁଣ୍ଠିତ ହେଉ ନ ଥିଲେ । ସେ ଇଂରେଜ ଶାସକଙ୍କର ଦୋଷ ଓ ଅନ୍ୟାୟ ଦର୍ଶାଇ ଏକ ପ୍ରବନ୍ଧ କୁଙ୍ଗା-ବର ପତ୍ରରେ ଲେଖିଥିଲେ । ଏହା ୧୮୨୭ ମସିହା ନଭେମ୍ବର ମାସରେ ସଟନ୍ ସାହେବଙ୍କଦ୍ୱାରା ଇଂରେଜୀରେ ଅନୁବାଦିତ ହୋଇ ବିଲାତରେ ମିଶନେରୀ ପତ୍ରିକାରେ ପ୍ରକାଶ ପାଇଥିଲା । ରେଭେରେଣ୍ଡ ଲେସି ଓ ସଟନ୍ ସାହେବ ସାଧୁଙ୍କ ପ୍ରବନ୍ଧମାନଙ୍କର ଯଥେଷ୍ଟ ପ୍ରଶଂସା କରି ଯାଇଅଛନ୍ତି ।

ଲୋକମାନଙ୍କର ସାଧୁଙ୍କଠାରେ ପ୍ରଗାଢ ବିଶ୍ୱାସ ଥିବାରୁ ସେମାନେ ପ୍ରତ୍ୟେକ ଗୁରୁତର କାର୍ଯ୍ୟରେ ତାଙ୍କର ସାହାଯ୍ୟ ଲୋଡ଼ୁଥିଲେ । ନିକଟବର୍ତ୍ତୀ ଗ୍ରାମମାନଙ୍କରେ କୌଣସି କଳହ ବା ମତଭେଦ ଘଟିଲେ ତାହାର ବିଚାର ଲାଗି ଲୋକେ କୁଙ୍ଗା-ବର ଆଶ୍ରମରେ ଉପସ୍ଥିତ ହେଉଥିଲେ । ନିରପେକ୍ଷ ପଣ୍ଡିତମାନଙ୍କ ବିଚାରରେ ସମସ୍ତେ ସନ୍ତୁଷ୍ଟ ହୋଇ ଯାଉଥିଲେ । ହିନ୍ଦୁ-ଧର୍ମଶାସ୍ତ୍ର ଓ ଆଇନ ବିଷୟରେ ତାଙ୍କର ଯଥେଷ୍ଟ ଜ୍ଞାନ ଥିଲା । ସାଧୁଙ୍କ ଆଶ୍ରମରେ ନିଷ୍ପତ୍ତି ହୋଇଥିବା କେତେକ ବଡ଼ ବଡ଼ ମକଦ୍ଦମାର ବିବରଣୀ ବିଲାତର ପତ୍ର ପତ୍ରିକାରେ ମଧ୍ୟ ଆଲୋଚିତ ହୋଇଥିଲା ।

---

## —ସାଧୁ ଓ ପାଦ୍ରୀଙ୍କର ବିରୋଧ—

ସାଧୁ ସୁନ୍ଦର ଦାସ କୌଣସି ଧର୍ମର ନିନ୍ଦା କରୁନଥିଲେ ଏବଂ ଖ୍ରୀଷ୍ଟିଆନ୍ ଧର୍ମମତର ପ୍ରଶଂସା କରୁଥିଲେ । ତେଣୁ

ପାଦ୍ରୀମାନେ ତାଙ୍କୁ ଖ୍ରୀଷ୍ଟିଅନ୍ ଧର୍ମର ଜଣେ ସହାୟକ ରୂପେ ବିବେଚନା କରୁଥିଲେ। କିନ୍ତୁ ଖ୍ରୀଷ୍ଟିଅନ୍ ଧର୍ମର ପ୍ରଚାର ପାଇଁ ପାଦ୍ରୀମାନେ ଯେଉଁ ପନ୍ଥା ଅବଲମ୍ବନ କରୁଥିଲେ, ତାହା ସାଧୁଙ୍କର ମନୋମତ ନ ଥିଲା। ଏହି ହେତୁରୁ ପରେ ସାଧୁ ଓ ପାଦ୍ରୀମାନଙ୍କ ମଧ୍ୟରେ ମତାନ୍ତର ଘଟିଥିବାର ଜଣାଯାଏ।

ଥରେ ଜଣେ ସ୍ତ୍ରୀ ଲୋକ କୌଣସି ସମାଜ ବିରୋଧୀ ନୀତିହୀନ କାର୍ଯ୍ୟ କରିଥିବାରୁ ସାଧୁ ସେହି ସ୍ତ୍ରୀ ଲୋକକୁ ଭର୍ତ୍ସନା କଲେ। ଏଥିପୂର୍ବରୁ ପାଦ୍ରୀମାନେ ସାଧୁଙ୍କୁ ଖ୍ରୀଷ୍ଟିଅନ କରିବାକୁ ଚେଷ୍ଟା କରି ବିଫଳ ହୋଇଥିଲେ। ହିନ୍ଦୁମାନଙ୍କ ମଧ୍ୟରେ ସାଧୁଙ୍କର ପ୍ରବଳ ପ୍ରଭାବ ବିଷୟ ସେମାନଙ୍କୁ ଅଜ୍ଞାତ ନଥିଲା। ତେଣୁ ସାଧୁଙ୍କୁ ଅପଦସ୍ଥ କରିବା ଲାଗି ସେମାନେ ଚେଷ୍ଟିତ ଥିଲେ। ପାଦ୍ରୀମାନେ ଉକ୍ତ ସ୍ତ୍ରୀ ଲୋକଟିକୁ ଆଣି କଟକ ମାଜିଷ୍ଟ୍ରେଟଙ୍କ ନିକଟରେ ସାଧୁଙ୍କ ବିରୁଦ୍ଧରେ କେତେକ ଅଭିଯୋଗ ଆଣାଇଲେ।

୧୮୩୦ ମସିହା ଅଗଷ୍ଟ ମାସ ୯ ତାରିଖ ଦିନ କଟକ ସହରରେ ସହସ୍ର ସହସ୍ର ଲୋକଙ୍କ କୋଳାହଳ ମଧ୍ୟରେ ସାଧୁ ସୁନ୍ଦର ଦାସ ଏହି ସ୍ତ୍ରୀ ଲୋକର ଅଭିଯୋଗ ଫଳରେ କାରାଗାରକୁ ପ୍ରେରିତ ହେଲେ। ଏହି ସମୟରେ ସହରରେ ସାଧୁଙ୍କ ସମ୍ବନ୍ଧରେ ନାନା ଅଦ୍ଭୁତ କଥା ଶୁଣାଗଲା। ଅନେକେ କହିଲେ ଯେ ସେମାନେ ସାଧୁଙ୍କୁ କଟକ ଜେଲ୍‌ଖାନା ଓ ଅନ୍ୟାନ୍ୟ ସ୍ଥାନରେ ଦେଖି ପାରନ୍ତି। ଖ୍ରୀଷ୍ଟିୟାନ ଧର୍ମରେ ଦୀକ୍ଷିତ ହୋଇଥିବା କେତେକ ହିନ୍ଦୁ ସାହେବମାନଙ୍କୁ କହିଲେ ଯେ ସୁନ୍ଦର ଦାସ ଅଲୌକିକ ଇତର ଲୋକ ନୁହନ୍ତି। ସେ ସ୍ୱୟଂ

ଯୀଶୁଖ୍ରୀଷ୍ଟ । ଯୀଶୁଖ୍ରୀଷ୍ଟ ଯେପରି ଅଲୌକିକ କାର୍ଯ୍ୟମାନ କରୁଥିଲେ, ସାଧୁ ସୁନ୍ଦର ଦାସ ମଧ୍ୟ ସେହିପରି କରୁଅଛନ୍ତି । ସାଧୁ ସୁନ୍ଦର ଦାସ ମୃତ ମନୁଷ୍ୟଙ୍କୁ ଜୀବନ ଦେଇ ପାରୁଥିଲେ ଓ ମହାନଦୀରେ ବନ୍ୟା ସମୟରେ ନୌକାର ବିନା ସାହାଯ୍ୟରେ ନଦୀ ପାରି ହେଉଥିଲେ । ସାହେବମାନେ ଏହି ସବୁ କଥା ଶୁଣି ଏଥିରେ ବିଶ୍ୱାସ କଲେ ନାହିଁ । ସେମାନଙ୍କ ମଧ୍ୟରୁ ଜଣେ କହିଥିଲେ, ଏହିପରି କେତେ ଭଣ୍ଡ ଯୀଶୁଖ୍ରୀଷ୍ଟ ବାହାରିବେ । କେତେ ଇନ୍ଦ୍ରଜାଲ ଦେଖାଇବେ । କିନ୍ତୁ ମୁଁ କହୁଛି ତୁମେ ସେମାନଙ୍କୁ ବିଶ୍ୱାସ କର ନାହିଁ ।

ମାଜିଷ୍ଟ୍ରେଟଙ୍କ ନିକଟରେ ମକଦ୍ଦମାର ବିଚାର ବେଳେ ସାଧୁ ସୁନ୍ଦର ଦାସ ଯେଉଁସବୁ ଯୁକ୍ତି କରିଥିଲେ, ସେଥିରେ ଖ୍ରୀଷ୍ଟିଆନ ଧର୍ମ ବା ପାଦ୍ରୀମାନଙ୍କର ନିନ୍ଦା ସେ ଆଦୌ କରି ନ ଥିଲେ । ସେ ସ୍ପଷ୍ଟ ସ୍ୱୀକାର କରିଥିଲେ ଯେ ସ୍ତ୍ରୀ ଲୋକଟିର କାର୍ଯ୍ୟ ସମାଜବିରୋଧୀ ତଥା ନୀତିବିରୋଧୀ । ଯେ କୌଣସି ବିପଥଗାମୀ ଲୋକକୁ ସତ୍ପଥକୁ ଆଣିବା ତାଙ୍କର କର୍ତ୍ତବ୍ୟ । ସ୍ତ୍ରୀ ଲୋକଟିକୁ ନୀତିଶିକ୍ଷା ଦେବା ପାଇଁ ସେ ଭର୍ତ୍ସନା କରିଅଛନ୍ତି । ମାଜିଷ୍ଟ୍ରେଟ ତାଙ୍କର ଏହି ଯୁକ୍ତି ଶୁଣି ତାଙ୍କୁ ମୁକ୍ତି ଦେଇଥିଲେ । ପ୍ରାୟ ଏକମାସ କାରାବାସ କରି ସାଧୁ ସୁନ୍ଦର କାରାଗାରରୁ ମୁକ୍ତ ହେଲେ । ତାହାଙ୍କ କାରାମୁକ୍ତି ଦିନ କଟକରେ ଗୋଟିଏ ବିରାଟ ସଭା ଅନୁଷ୍ଠିତ ହୋଇ ସେଥିରେ ସାଧୁଙ୍କ ସମ୍ମାନ ପ୍ରଦର୍ଶନ କରାଯାଇଥିଲା । ସେଠାରେ ଜାତି ଧର୍ମ ନିର୍ବିଶେଷରେ ପଂକ୍ତି ଭୋଜନର ବ୍ୟବସ୍ଥା ହୋଇଥିଲା । ଏହା ପରେ ଶିଷ୍ୟବର୍ଗଙ୍କ ସହ ସାଧୁ ଆଶ୍ରମକୁ ଫେରି ଯାଇଥିଲେ ।

ସାଧୁ ସୁନ୍ଦର ଦାସ ଶିଷ୍ୟମାନଙ୍କ ସହିତ କୁଞ୍ଜ-ବରକୁ ଫେରିଯାଇ ମହାଯଜ୍ଞ ଅନୁଷ୍ଠାନରେ ଯୋଗ ଦେଲେ । ଏହାପରେ ସାଧୁ ସୁନ୍ଦର ଦାସଙ୍କର ମାହାତ୍ମ୍ୟ ଦିନକୁଦିନ ବଢ଼ିବାକୁ ଲାଗିଲା । ଏବଂ ତାଙ୍କର ଶିଷ୍ୟ ସଂଖ୍ୟା ମଧ୍ୟ ସେହିପରି ବଢ଼ିଲା । ସାହେବ-ମାନେ ସାଧୁଙ୍କର ଏହି ପ୍ରଭାବ ଦେଖି ମନେ ମନେ ଆଶଙ୍କା କରିଥିଲେ । ପାଦ୍ରୀମାନଙ୍କ ମଧ୍ୟରୁ ଲେସି ସାହେବ ସ୍ୱୀକାର କରି ଯାଇ ଅଛନ୍ତି ଯେ, ଜୀବନର ଶେଷଭାଗରେ ସାଧୁ ସୁନ୍ଦର ଦାସଙ୍କର ପ୍ରଭାବ ଅତୁଳନୀୟ ଓ ଅକଥନୀୟ ହୋଇଥିଲା । ସଠନ୍ ସାହେବ ମଧ୍ୟ ସାଧୁଙ୍କୁ ଖ୍ରୀଷ୍ଟିଆନ ଧର୍ମର ପ୍ରଧାନ ଶତ୍ରୁ ବୋଲି ବିବେଚନା କରୁଥିଲେ । ଧର୍ମ ସମ୍ବନ୍ଧରେ କୌଣସି କୁସଂସ୍କାରକୁ, ଖ୍ରୀଷ୍ଟଧର୍ମ ତଥା ହିନ୍ଦୁଧର୍ମର ତଥ୍ୟଗୁଡ଼ିକୁ ପୁଙ୍ଖାନୁପୁଙ୍ଖ ରୂପେ ବିଶ୍ଳେଷଣ କରି ସେଗୁଡ଼ିକର ତୁଳନା କରି କାର୍ଯ୍ୟ କରିବାକୁ ସେ ଶିଷ୍ୟମାନଙ୍କୁ ଉପଦେଶ ଦେଉଥିଲେ । ସେ ସ୍ୱପ୍ରକାଶିତ କୁଞ୍ଜ-ବର ପତ୍ରର ନକଲ ଗୁଡ଼ିକୁ ମିଶନେରୀ କେନ୍ଦ୍ରମାନଙ୍କୁ ମଧ୍ୟ ପଠାଉଥିଲେ । ତାହାଙ୍କ ଶିଷ୍ୟମାନେ ତାଙ୍କୁ ଦେବତା ଜ୍ଞାନରେ ଭକ୍ତି କରୁଥିଲେ ଏବଂ ଦୈବାତ୍ କୌଣସି କୁକାର୍ଯ୍ୟ କଲେ ସେଥିଲାଗି ଗୁରୁଙ୍କୁ କ୍ଷମା ମାଗୁଥିଲେ ।

୧୮୩୦ ମସିହାରେ ଗୋଟିଏ ଚାଞ୍ଚଲ୍ୟକର ଘଟଣା ଘଟିଥିଲା । ସେହିବର୍ଷ ଖ୍ରୀଷ୍ଟିଆନ୍ ମିଶନେରୀମାନେ ଦୁଇଜଣ ହିନ୍ଦୁ ମହିଳାଙ୍କୁ ସେମାନଙ୍କ ସ୍ୱାମୀ ବା ଅଭିଭାବକଙ୍କର ବିନାନୁମତିରେ ଖ୍ରୀଷ୍ଟିଅନ୍ ଧର୍ମରେ ଦୀକ୍ଷିତ କରାଇଲେ । ଏ ବିଷୟ ସାଧୁଙ୍କର କର୍ଣ୍ଣଗୋଚର ହେବାରୁ ସେ ପ୍ରଥମେ ଆଶ୍ରମର ପ୍ରଧାନ ଶିଷ୍ୟ ଓ ତାଙ୍କର ଭକ୍ତମାନଙ୍କ ମଧ୍ୟରେ ଏହାର ଆଲୋଚନା

କଲେ । ସ୍ଥିର ହେଲା ଯେ ସ୍ତ୍ରୀ ଦ୍ୱୟଙ୍କ ବିନାନୁମତିରେ ସେମାନଙ୍କ ସ୍ୱାମୀଙ୍କ ନିକଟରୁ ଘେନିଆସିବା ମିଶନେରୀମାନଙ୍କ ପକ୍ଷେ ଅନ୍ୟାୟ । ଏହାର ପ୍ରତିକାର ପାଇଁ ସାଧୁ କଟକ ଜିଲ୍ଲାର କଲେକ୍ଟରଙ୍କ ନିକଟରେ ଅଭିଯୋଗ ଆଣିଲେ । ସେ ସମୟରେ ଇଂରେଜମାନେ ଅଳ୍ପଦିନ ହେଲା ଓଡ଼ିଶାର ଶାସନଭାର ଗ୍ରହଣ କରିଥାନ୍ତି; ପାଦ୍ରୀ-ମାନେ ପ୍ରତ୍ୟକ୍ଷ ଭାବରେ ଶାସନ କାର୍ଯ୍ୟରେ ସଂପୃକ୍ତ ନ ଥିଲେ ସତ୍ୟ; କିନ୍ତୁ ଲୋକସାଧାରଣ ଇଉରୋପୀୟ ପାଦ୍ରୀମାନଙ୍କୁ ବିଶେଷ ଭୟ କରୁଥିଲେ ଏବଂ ପାଦ୍ରୀମାନଙ୍କର କୌଣସି କାର୍ଯ୍ୟର ପ୍ରତିବାଦ କରିବାକୁ ସାହସ କରୁ ନ ଥିଲେ । କିନ୍ତୁ ମାଜିଷ୍ଟ୍ରେଟ ଦେଖିଲେ ଯେ ସାଧୁଙ୍କର ମିଶନେରୀମାନଙ୍କ ବିରୁଦ୍ଧରେ ଏହି ମକଦ୍ଦମା ଗ୍ରହଣ କରାଗଲେ ନାନା ଗଣ୍ଡଗୋଳ ଲାଗିପାରେ । ତେଣୁ ସେ ମକଦ୍ଦମାଟିକୁ ଖାରଜ କରିଦେଲେ । ସାଧୁ ଓ ତାଙ୍କର ଶିଷ୍ୟମାନେ ଏଥିରେ ନିରସ୍ତ ନ ହୋଇ ମାଜିଷ୍ଟ୍ରେଟଙ୍କ ନିଷ୍ପତ୍ତି ବିରୁଦ୍ଧରେ ତତ୍କାଳୀନ ଜିଲ୍ଲାଜଜ୍ ମିଷ୍ଟର ଜଇଲିଅମ୍ ଜଇଲ୍‌କିନ୍‌ସନ୍‌ଙ୍କ ନିକଟରେ ଦରଖାସ୍ତ କଲେ । ଜଜ୍‌ସାହେବ ସାଧୁ ଓ ମିଶନେରୀ ଉଭୟ ପକ୍ଷର ଲୋକମାନଙ୍କୁ ଡକାଇ ନିଷ୍ପତ୍ତି କଲେ ଯେ ସ୍ତ୍ରୀ ଲୋକମାନେ ସ୍ୱାମିଙ୍କଠାରୁ ଆଣିଥିବା ଅଳଙ୍କାର ପତ୍ର ଓ ଶିଶୁ ସନ୍ତାନମାନଙ୍କୁ ନିଜ ନିଜ ସ୍ୱାମିଙ୍କୁ ଫେରାଇ ଦେବେ । ମିଶନେରୀ-ମାନେ ପଚିଶ ଟଙ୍କା ଜୋରିମାନା ଦେଇ ଫାଇଲ୍ ଜାମିନ୍‌ରେ ରହିବେ ଏବଂ ଭବିଷ୍ୟତରେ ଏପରି କାର୍ଯ୍ୟ କଲେ କଠିନ ଦଣ୍ଡ ପାଇବେ ବୋଲି ସାବଧାନ କରିଦେଲେ ।

ଜଜ୍ ସାହେବଙ୍କର ଏହି ରାୟକୁ ମିଶନେରୀମାନେ କଠୋର ସମାଲୋଚନା କଲେ । ଖ୍ରୀଷ୍ଟିଅନ ଅବଜରଭର୍ ନାମକ ପତ୍ରିକା ଜଜ୍ ସାହେବଙ୍କର ଏହି ରାୟକୁ ତୀବ୍ର ସମାଲୋଚନା କରିଥିଲା ।

୧୮୭୭ ମସିହା ଅପ୍ରେଲ ମାସରେ ମିଶନେରୀମାନେ ଇଙ୍ଗ୍ ସାହେବଙ୍କର ଏହି ଧର୍ମ ବିରୁଦ୍ଧରେ କଲିକତାର ନିଜାମ ଅଦାଲତରେ ଅପିଲ କରିଥିଲେ । କିନ୍ତୁ ଏହାର କିଛି ଫଳ ହୋଇ ନ ଥିଲା । ମିଶନେରୀମାନଙ୍କ ସହିତ ପ୍ରଥମ ସାକ୍ଷାତ କାଳରେ ସାଧୁ ସୁନ୍ଦର ଦାସ ସେମାନଙ୍କ ପ୍ରତି ବିଶେଷ ବନ୍ଧୁତ୍ୱ ପ୍ରତିଷ୍ଠା କରିଥିଲେ । ଖ୍ରୀଷ୍ଟିୟ ଧର୍ମନୀତିର ପ୍ରଶଂସା ତାହାଙ୍କ ମୁଖରୁ ଶୁଣା ଯାଇଥିଲା । ମିଶନେରୀମାନେ ଓଡ଼ିଶାରେ ଶିକ୍ଷା ପ୍ରଚାର ଲାଗି ସମଗ୍ର ଭାର ସାଧୁ ସୁନ୍ଦର ଦାସଙ୍କ ଉପରେ ଅର୍ପଣ କରିବାର ପ୍ରସ୍ତାବ କରିଥିଲେ । ପରେ ଘଟଣାଚକ୍ରରେ ସାଧୁ ଓ ମିଶନେରୀମାନଙ୍କ ମଧ୍ୟରେ ବିରୋଧ ଭାବ ଜନ୍ମିଥିଲା । ତଥାପି ମିଶନେରୀମାନେ ସାଧୁଙ୍କର ବିଶୁଦ୍ଧ ନୀତିମୟ ଜୀବନ ଓ ନିର୍ମଳ ଚରିତର ବିଶେଷ ପ୍ରଶଂସା କରିଯାଇ ଅଛନ୍ତି ।

---

## —ସାଧୁଙ୍କର ଉପଦେଶ—

ସାଧୁ ସୁନ୍ଦର ଦାସ ବାଲ୍ୟକାଳରେ ଗ୍ରାମ୍ୟ ପାଠଶାଳାରେ ସାମାନ୍ୟ ବିଦ୍ୟା ଶିକ୍ଷା କରିଥିଲେ । ପରେ କୁଞ୍ଜ-ବିହାରୀ ଆଶ୍ରମରେ ସଂସ୍କୃତ ଶିକ୍ଷା କରି ହିନ୍ଦୁଧର୍ମ ଶାସ୍ତ୍ର ଓ ପୁରାଣମାନଙ୍କର ଆଲୋଚନା କରିଥିଲେ । ଖ୍ରୀଷ୍ଟିଆନ ଧର୍ମଗ୍ରନ୍ଥ ପାଠ କରି ସେହି ଧର୍ମର ତତ୍ତ୍ୱ ବୁଝିବା ନିମନ୍ତେ ସେ ବୃଦ୍ଧ ବୟସରେ ଇଂରାଜୀ ଶିକ୍ଷା କରିଥିଲେ । ହିନ୍ଦୀ ଓ ମରହଟ୍ଟୀ ଭାଷାରେ ମଧ୍ୟ ତାହାଙ୍କର ବିଶେଷ ବ୍ୟୁତ୍ପତ୍ତି ଥିଲା । ସେ ବିଭିନ୍ନ ଭାଷା ଓ ଧର୍ମର ପୁସ୍ତକ ସମୂହ ତାହାଙ୍କ ଆଶ୍ରମରେ ରଖି ସେ ସବୁର ଅନୁଶୀଳନ କରୁଥିଲେ ଓ କରାଉଥିଲେ । ଜନସେବାକୁ ସେ ଧର୍ମର ପ୍ରଧାନ

ଅଙ୍ଗ ବୋଲି ମନେ କରୁଥିଲେ । ନିକଟବର୍ତ୍ତୀ ଗ୍ରାମମାନଙ୍କରେ ହଇଜା ପ୍ରଭୃତି ରୋଗ ଦେଖାଦେଲେ ସେ ଶିଷ୍ୟମାନଙ୍କୁ ନେଇ ରୋଗୀମାନଙ୍କ ସେବା କରୁଥିଲେ । ସେ ହିନ୍ଦୁ ଥିଲେ ଓ ଏକ ଈଶ୍ୱରରେ ଦୃଢ଼ ବିଶ୍ୱାସ କରୁଥିଲେ । ଜାତି ଧର୍ମ ନିର୍ବିଶେଷରେ ସେହି ପରମେଶ୍ୱରଙ୍କ ପୂଜା କରିବା ପ୍ରତ୍ୟେକ ମାନବର କର୍ତ୍ତବ୍ୟ ବୋଲି କହୁଥିଲେ । ଖ୍ରୀଷ୍ଟିଆନ ଧର୍ମ ଗ୍ରନ୍ଥରେ ଯେଉଁ ଗୁଡ଼ିକ ଭଲ ବୋଧ ହେଉଥିଲା, ସେଗୁଡ଼ିକ ଶିଷ୍ୟମାନଙ୍କୁ ଉପଦେଶ ଦେଇ ପାଳନ କରିବାକୁ କହୁଥିଲେ ।

---

## —ସାଧୁଙ୍କର ଖ୍ରୀଷ୍ଟିଆନ ଶିଷ୍ୟ—

ସାଧୁଙ୍କର ଜୀବନର ଶେଷଭାଗରେ ତାଙ୍କର କେତେକ ଶିଷ୍ୟ ଖ୍ରୀଷ୍ଟିଆନ ଧର୍ମ ଗ୍ରହଣ କରିଥିଲେ ଓ ସେମାନଙ୍କ ମଧ୍ୟରୁ କେହି କେହି ସାଧୁଙ୍କର ନିନ୍ଦା ଘୋଷଣା କରିଥିଲେ । ଗଙ୍ଗାଧର ଷଡ଼ଙ୍ଗୀ ସାଧୁଙ୍କର ଜଣେ ପ୍ରଧାନ ଶିଷ୍ୟ ଥିଲେ ଓ କୁଞ୍ଜ-ବର ପତ୍ର ସମ୍ପାଦନାରେ ସାଧୁଙ୍କର ସହକର୍ମୀ ଥିଲେ । ସେ କୁଞ୍ଜ-ବର ଆଶ୍ରମରେ ରହି ବେଦ, ବେଦାନ୍ତ, ବ୍ୟାକରଣ, ଜ୍ୟୋତିଷ ପ୍ରଭୃତି ଶିକ୍ଷା କରି ଓଡ଼ିଶାର ନାନା ସ୍ଥାନରେ ସାଧୁଙ୍କର ବାଣୀ ପ୍ରଚାର କରୁଥିଲେ । ଗଙ୍ଗାଧର ଖ୍ରୀଷ୍ଟିଆନ ଧର୍ମ ପୁସ୍ତକ ପାଠ କରି ଉକ୍ତ ଧର୍ମ ଗ୍ରହଣ କରିବାକୁ ଇଚ୍ଛା ପ୍ରକାଶ କରିବାରୁ ଗୁରୁ ସୁନ୍ଦର ଦାସ ଆନନ୍ଦରେ ତାହାଙ୍କୁ ଅନୁମତି ଦେଇଥିଲେ । ଲେସି ସାହେବ ଗଙ୍ଗାଧରଙ୍କୁ ମହାନଦୀରେ ବୁଡ଼ାଇ ତାଙ୍କୁ ଖ୍ରୀଷ୍ଟିଆନ ଧର୍ମରେ ଦୀକ୍ଷିତ କରାଇଲେ । ଗଙ୍ଗାଧର

ବହୁଶାସ୍ତ୍ରରେ ପ୍ରବୀଣ ଥିଲେ ଏବଂ ଓଡ଼ିଶାର ପ୍ରଥମ ଓଡ଼ିଆ ଖ୍ରୀଷ୍ଟିଆନ ଧର୍ମ ପ୍ରଚାରକ ରୂପେ ସୁନାମ ଅର୍ଜିଥିଲେ । ଲଣ୍ଡନର ମିଶନେରୀ ରିପୋର୍ଟରେ ଏହି ଗଙ୍ଗାଧରଙ୍କ ବିଷୟରେ ଉଲ୍ଲେଖ କରାଯାଇଅଛି ।

ଖ୍ରୀଷ୍ଟିଆନ ଧର୍ମରେ ଦୀକ୍ଷିତ ହୋଇ ସୁଦ୍ଧା ଗଙ୍ଗାଧରଙ୍କର ସାଧୁଙ୍କ ପ୍ରତି ଗୁରୁଭକ୍ତି ଅଟଳ ଥିଲା । ଖ୍ରୀଷ୍ଟିଆନ ଧର୍ମର ମହତ୍ ନୀତି ସେ ପ୍ରଥମେ ସାଧୁ ସୁନ୍ଦର ଦାସଙ୍କଠାରୁ ଶୁଣିବାକୁ ପାଇଥିଲେ । ସେ ମନେ କରୁଥିଲେ ଯେ ସ୍ୱୟଂ ଯୀଶୁଖ୍ରୀଷ୍ଟ ସାଧୁ ସୁନ୍ଦର ଦାସ ରୂପରେ ପୃଥିବୀରେ ଅବତୀର୍ଣ୍ଣ ହୋଇ ଅଛନ୍ତି । ଗଙ୍ଗାଧର ଗୁରୁଙ୍କଠାରୁ କେତେଗୁଡ଼ିଏ ସଦ୍‌ଗୁଣ ଅନୁକରଣ କରିଥିଲେ । ତାଙ୍କର ଜୀବନ ନିଷ୍କଳଙ୍କ ଥିଲା । ତାଙ୍କ ପରି ସ୍ୱାଧୀନଚେତା ସ୍ୱଦେଶପ୍ରେମିକ ବିରଳ । ଖ୍ରୀଷ୍ଟିଆନ ଧର୍ମ ଗ୍ରହଣ କରିବା ପରେ ସେ ଆମେରିକାର ଖ୍ରୀଷ୍ଟିଆନ ମିଶନ୍‌କୁ ଖଣ୍ଡିଏ ପତ୍ର ଲେଖିଥିଲେ । ସେଥିରେ ସେ ଲେଖିଥିଲେ ଯେ— ଭାରତୀୟ ଖ୍ରୀଷ୍ଟିଆନ୍‌ମାନେ ମଧ୍ୟ ଆମେରିକାର ଖ୍ରୀଷ୍ଟିଆନମାନଙ୍କ ପରି ସଂପୂର୍ଣ୍ଣ ସ୍ୱାଧୀନ ଜୀବନ ଯାପନ କରିବାର ଅଧିକାର ପାଇବା ଉଚିତ । ଗଙ୍ଗାଧର ପ୍ରାୟ ୪୦ ବର୍ଷ ପର୍ଯ୍ୟନ୍ତ ଖ୍ରୀଷ୍ଟିଆନ ଧର୍ମର ପ୍ରଚାର କରି ୧୮୭୭ ମସିହାରେ ଇହଧାମରୁ ବିଦାୟ ନେଲେ ।

---

## —ତିରୋଧାନ—

ସାଧୁ ସୁନ୍ଦର ଦାସ ୧୧୮ ବର୍ଷ ପର୍ଯ୍ୟନ୍ତ ଜୀବିତ ଥିଲେ । ବାର୍ଦ୍ଧକ୍ୟରେ ମଧ୍ୟ ତାଙ୍କର ଯଥେଷ୍ଟ ଶକ୍ତି ଥିଲା ଓ ସୁନ୍ଦର ଭାବରେ ସେ ସମସ୍ତ କାର୍ଯ୍ୟ ସାଧନ କରୁଥିଲେ । ଶେଷ ଅବସ୍ଥାରେ ମଧ୍ୟ

ତାଙ୍କର ମାନସିକ ଶକ୍ତିର କିଛିହିଁ ହ୍ରାସ ଘଟି ନଥିଲା । ୧୮୩୮ ମସିହା ଅପ୍ରେଲ୍ ମାସରେ ଦିନେ ସନ୍ଧ୍ୟା ପୂର୍ବରୁ ସେ ଆଶ୍ରମର ଶିଷ୍ୟମାନଙ୍କୁ ଡାକି କହିଲେ—"ମୁଁ ଯେଉଁ ଭଗବାନଙ୍କର ଆଦେଶରେ ଏହି ପୃଥିବୀକୁ କାର୍ଯ୍ୟ କରିବାକୁ ଆସିଥିଲି, ସେ ମୋତେ ଫେରିଯିବା ପାଇଁ ଆଦେଶ ଦେଲେଣି । ମୋତେ ଅତି ଶୀଘ୍ର ତୁମମାନଙ୍କ ନିକଟରୁ ବିଦାୟ ନେବାକୁ ହେବ । ମୋ ନିମନ୍ତେ ଗୋଟିଏ ଗର୍ତ୍ତ ପ୍ରସ୍ତୁତ କର, ତାହା ମଧ୍ୟରେ ମୁଁ ସମାଧି ଗ୍ରହଣ କରିବି ।"

ସାଧୁଙ୍କ ଆଦେଶରେ ଗୋଟିଏ ଗର୍ତ୍ତ ଖୋଳାଗଲା ଶିଷ୍ୟମାନେ ଦୁଃଖରେ କ୍ରନ୍ଦନ କରିବାକୁ ଲାଗିଲେ । କିନ୍ତୁ ସାଧୁ ସେମାନଙ୍କୁ ବୁଝାଇ କହିଲେ—"ମୁଁ ଭଗବାନଙ୍କର ଆଦେଶ ନେଇ ପୃଥିବୀକୁ ଆସିବି ଓ ମୋର କାର୍ଯ୍ୟ କରିବି । ଏଥିପାଇଁ ଦୁଃଖ କରିବା ନିଷ୍ପ୍ରୟୋଜନ ।" ଏହା ପରେ ଶିଷ୍ୟ ଓ ଜନ ସାଧାରଣଙ୍କ ମଙ୍ଗଳ କାମନା କରି ତିନିଥର ଊର୍ଦ୍ଧ୍ୱକୁ ପ୍ରଣାମ କରି ସେ ଗର୍ତ୍ତ ମଧ୍ୟରେ ପ୍ରବେଶ କଲେ ଓ ସମାଧିରେ ନିମଗ୍ନ ରହିଲେ । ସେହି ସମାଧି ଆଜି ଭାଙ୍ଗିନି ନାହିଁ ।

ସାଧୁଙ୍କର ତିରୋଧାନ ସଂବାଦ ଚାରିଆଡ଼େ ବ୍ୟାପିଗଲା । ଶିଷ୍ୟମାନେ ଗଭୀର ଦୁଃଖରେ ନିମଗ୍ନ ହେଲେ । ସାଧୁଙ୍କର ସମାଧି ଗ୍ରହଣ କରିବାର ୧୨ ଦିନ ପରେ ଅକ୍ଷୟତୃତୀୟା ଉପସ୍ଥିତ ହେଲା । ଏଥିପୂର୍ବରୁ ସାଧୁ ଅକ୍ଷୟତୃତୀୟା ଦିନ କୁଞ୍ଜ-ବରଠାରେ ଗୋଟିଏ ବିରାଟ ଯଜ୍ଞ ଅନୁଷ୍ଠାନ କରୁଥିଲେ । ଆଶ୍ରମର ଶିଷ୍ୟମାନଙ୍କଠାରୁ ସମ୍ବାଦ ପାଇ ସାଧୁଙ୍କର ଶିଷ୍ୟମାନେ ଯଜ୍ଞ ସାମଗ୍ରୀ ପ୍ରଭୃତି ନେଇ ଉକ୍ତଦିନ କୁଞ୍ଜ-ବରଠାରେ ଉପସ୍ଥିତ

ହେଲେ । ଏହି ଯଜ୍ଞରେ ସାଧୁଙ୍କର ହିନ୍ଦୁ ମୁସଲମାନ ଖ୍ରୀଷ୍ଟିୟାନ ପ୍ରଭୃତି ବିଭିନ୍ନ ଧର୍ମାବଲମ୍ବୀ ଶିଷ୍ୟମାନେ ମିଳିତ ହୋଇ ଗୁରୁଙ୍କ ସମାଧି ନିକଟରେ ଶ୍ରଦ୍ଧାଞ୍ଜଳି ଅର୍ପଣ କଲେ । ଯଜ୍ଞ ଶେଷ ହେବା ପରେ ଶିଷ୍ୟମାନେ ମିଳି ସାଧୁଙ୍କର ସ୍ମୃତିରକ୍ଷା ନିମନ୍ତେ ବିବିଧ ଆଲୋଚନା କଲେ । ଏହି ସମୟରେ ସାଧୁଙ୍କର ଆତ୍ମା ଜନୈକ ଶିଷ୍ୟଠାରେ ଆବିର୍ଭୂତ ହୋଇ ପ୍ରକାଶ କଲେ—"ମୋର ସ୍ମୃତି ରକ୍ଷା ପାଇଁ ଚିନ୍ତା କରିବା ଆବଶ୍ୟକ ନାହିଁ । ତୁମ୍ଭେମାନେ ନିମିତ୍ତ ମାତ୍ର ହୋଇ କାର୍ଯ୍ୟ କର । ମୁଁ ମୋର କାର୍ଯ୍ୟ କରି ନେବି ।"

ଏହି ଘଟଣାର କିଛିଦିନ ପରେ ସାଧୁଙ୍କର ଜଣେ ଶିଷ୍ୟ ୫୦୦୦ ଟଙ୍କା ସଂଗ୍ରହ କରି ଉପସ୍ଥିତ ହେଲେ । ଆଶ୍ରମର ସେବକଙ୍କୁ ସାଧୁ ସ୍ୱପ୍ନାଦେଶ ଦେଇ କହିଲେ ଯେ, ସମାଧି ମନ୍ଦିରକୁ ପଞ୍ଚମୁଖୀ କରିବ ଓ ତାହା ସଙ୍ଗେ ପାନ୍ଥଶାଳା, ରନ୍ଧନଶାଳା, ଦୋଳବେଦୀ, ସଭାମଣ୍ଡପ ପ୍ରଭୃତି ପ୍ରସ୍ତୁତ କରିବ । ଶିଷ୍ୟମାନେ ତଦନୁସାରେ ସମାଧି ମନ୍ଦିର ନିର୍ମାଣ କଲେ । ସେହି ଦିନଠାରୁ କୁଞ୍ଜ-ବନ ସମାଧି ମନ୍ଦିର ନିକଟରେ ପ୍ରତିବର୍ଷ ଚୈତ୍ର ପୂର୍ଣ୍ଣିମାଠାରୁ ସପ୍ତ-ଦିବସ ବ୍ୟାପୀ ଯଜ୍ଞ ହୋଇ ଆସୁଅଛି ।

**ସ ମା ପ୍ତ**

ବ୍ରହ୍ମପୁର ନଭ କିଶୋର ପ୍ରେସ୍‌ରେ ଶ୍ରୀ ଘନଶ୍ୟାମ ଦାଶଙ୍କଦ୍ୱାରା ମୁଦ୍ରିତ

# ମହାତ୍ମା ସାଧୁ ସୁନ୍ଦର ଦାସଙ୍କ ବିରଚିତ

## —ଅଦ୍ୱୈତବାଦ ଚୌପଦୀ ଛାନ୍ଦ—

| | |
|---|---|
| ଶୁଣ ହେ ଅଦ୍ୱୈତ | ବିଷୟ ପ୍ରକାଶ, |
| ନାହଂ ନତ୍ୱଂ | ନା ତନ୍ତୁ ବାସ । |
| ନାହିଁତ ପ୍ରପଞ୍ଚ | ନାହିଁତ ପ୍ରସାର, |
| ନାହିଁ ତହିଁ ସୃଷ୍ଟି | ସୃଜନ ସଂହାର । |
| ନାହିଁତ ପ୍ରକୃତି | ପୁରୁଷ ନ ଇଚ୍ଛା, |
| ନାହିଁ ତହିଁ କାଳ | କର୍ମ ନାହିଁ ବାଞ୍ଛା । |
| ନାହିଁ ତହିଁ ଶ୍ରୁତ | ଶ୍ରବଣ ନା ମୂଳ, |
| ନାହିଁ ତହିଁ ସୂକ୍ଷ୍ମ | ନାହିଁ ତହିଁ ସ୍ଥୂଳ । |
| ନାହିଁ ତହିଁ ତତ୍ତ୍ୱ | ଅତତ୍ତ୍ୱ ବିଭେଦ, |
| ନାହିଁ ତହିଁ ବସ୍ତୁ | ପୁରାଣ ବା ବେଦ । |
| ନାହିଁ ତହିଁ ବର୍ଣ୍ଣ | ବିବର୍ଣ୍ଣ ବିଧାନ, |
| ନାହିଁ ତହିଁ ରୂପ | ଅରୂପର ସ୍ଥାନ । |
| ନାହିଁ ତହିଁ ଯାପକ | ବ୍ୟାପକ ଦେଖା, |
| ନାହିଁ ତହିଁ ରୂପ | ଅରୂପ ବା ରେଖା । |
| ନାହିଁ ତହିଁ ଜ୍ୟୋତି | ଅଜ୍ୟୋତି ବିଜସ୍ତୀ, |
| ନାହିଁ ତହିଁ ଏକ | ନାହିଁ ତହିଁ ଦୁଇ । |
| ନାହିଁ ତହିଁ ଆଦ୍ୟ | ନ ମଧ୍ୟ ନ ଅନ୍ତ, |
| ନାହିଁ ତହିଁ ପାଳକ | ନାହିଁ ହନ୍ତା ହନ୍ତ । |
| ନାହିଁ ତହିଁ ଶକ୍ତି | ନାହିଁ ତହିଁ ଶିବ, |
| ନାହିଁ ତହିଁ ଜନ୍ମ | ନାହିଁ ତହିଁ ଜୀବ । |

ନାହିଁ ତହିଁ ଲେଖା ନାହିଁତ ଲେଖକ,
ନାହିଁ ତହିଁ କର୍ତ୍ତା ନାହିଁତ କାରକ ।
ନାହିଁ ତହିଁ ସ୍ୱର୍ଗ ନରକ ନିବାସ,
ନାହିଁତ ଅସକ୍ତ ନାହିଁ ତହିଁ ଅଂଶ ।
ନାହିଁ ତହିଁ ପାପ ନ ପୁଣ୍ୟ ଧରତା,
ନାହିଁ ତହିଁ ଧର୍ମ ଅଧର୍ମ କରତା ।
ନାହିଁ ତହିଁ ଜ୍ଞାନୀ ଅଜ୍ଞାନୀ ବା ମୂର୍ଖ,
ନାହିଁ ତହିଁ ବାଦ ବିବାଦ ବା ତର୍କ ।

ନାହିଁ ତହିଁ ହୋମ ନ ଯଜ୍ଞ ବିଧାନ,
ନାହିଁ ତହିଁ ବେଦ ନାହିଁ ତ ସମାନ ।
ନାହିଁ ତହିଁ ଶାଖା ଛେଦ ସର୍ଗ ସର୍ବ,
ନାହିଁ ତହିଁ ଦେବ ମାନବ ଗନ୍ଧର୍ବ ।

ନାହିଁ ତହିଁ ଇଷ୍ଟ ଅନିଷ୍ଟ ବା ଭ୍ରାନ୍ତ,
ନାହିଁତ ସଗୁଣ ନିର୍ଗୁଣ ବୃତ୍ତାନ୍ତ ।
ନାହିଁତ ସେବକ ସେବ୍ୟ ନ ସେବା,

ନାହିଁ ତହିଁ ପ୍ରେମ ନାହିଁ ତନି ଲେବା ।
ନାହିଁ ତହିଁ ଭାବ ନାହିଁ ତହିଁ ଭକ୍ତି,
ନାହିଁ ତହିଁ ମୋକ୍ଷ ନାହିଁ ତହିଁ ମୁକ୍ତି ।

ନାହିଁ ତହିଁ ଯାପ୍ୟ ନାହିଁ ତହିଁ ଯାପୀ,
ନାହିଁ ତହିଁ ମନ୍ତ୍ର ନାହିଁ ଲସ୍ତୁ ଥାପି ।
ନାହିଁତ ସାଧକ ସିଦ୍ଧ ନ ସମାଧି,
ନାହିଁ ତହିଁ ଯୋଗ ନାହିଁ ରୋଗ ବ୍ୟାଧି ।
ନାହିଁ ତହିଁ ମୁଦ୍ରା ବନ୍ଧନ ବିଧି,
ନାହିଁ ତହିଁ କୁଣ୍ଡ- ଳିନୀ ନାହିଁ ସିଦ୍ଧି ।

ନାହିଁ ତହିଁ ରଙ୍କ ନା ନାଡ଼ି ପ୍ରସାର,
ନାହିଁ ତହିଁ ବେଧ ବେଧ ନ ଦ୍ୱାର ।
ନାହିଁ ତହିଁ ଲିଙ୍ଗ ଅଲିଙ୍ଗ ପ୍ରଧାନ,
ନାହିଁ ତହିଁ ମନ ବୁଦ୍ଧି, ଚିତ୍ତ, ଧ୍ୟାନ ।
ନାହିଁ ତହିଁ ସତ୍ତ୍ୱ, ରଜ, ତମ, ଗୁଣ,
ନାହିଁତ ଇନ୍ଦ୍ରିୟ ଦ୍ୱାର ମାନ ପୂର୍ଣ ।
ନାହିଁ ତହିଁ ସ୍ୱପ୍ନ ଜାଗ୍ରତ ସୁଷୁପ୍ତି,
ନାହିଁ ତହିଁ ତୁରୀୟ ମନ୍ତ୍ରଣା ନ ଗୁପ୍ତି ।



# ଆମ ପଡ଼ିଶା ଅଡ଼ିଶା ସିରିଜ୍

ଲେଖକ—ପଣ୍ଡିତ ଗୋଦାବରୀଶ ମିଶ୍ର

୧ । ଅଷ୍ଟ୍ରେଲିଆ
୨ । ଦକ୍ଷିଣ ଅଫ୍ରିକା
୩ । ପଶ୍ଚିମ ଗୋଲାର୍ଦ୍ଧ
୪ । ମଧ୍ୟ ଅମେରିକା
୫ । ଗ୍ରେଟ୍ ବ୍ରିଟେନ୍

ପ୍ରତ୍ୟେକରେ ସେହି ଦେଶମାନଙ୍କର ଭୌଗୋଳିକ, ସାମାଜିକ ଓ ରାଜନୈତିକ ବିବରଣୀ ସରଳ ଭାଷାରେ ଦିଆଯାଇଛି ।

**"ଗ୍ରେଟ୍ ବ୍ରିଟେନ୍"**—ସମ୍ପୂର୍ଣ୍ଣ ନୂଆ ବହି ।

ପ୍ରତ୍ୟେକ ବହିର ମୂଲ୍ୟ ଛଅ ଅଣା

---

ଅଧ୍ୟାପକ ଗୋକୁଳାନନ୍ଦ ମହାପାତ୍ରଙ୍କ ପ୍ରଣୀତ—

# ଅଜାଙ୍କ ମଜାକଥା

( ପିଲାଙ୍କ ପାଇଁ ଶିଳ୍ପ-ବିଜ୍ଞାନମୂଳକ ଗଳ୍ପ )

**(୧) କାଚ କଥା**
**(୨) କାଗଜ କଥା**
**(୩) ଚିନି କଥା**
**(୪) ସାର କଥା**
**(୫) କସ୍ତିନ କଥା**

ପ୍ରତିଖଣ୍ଡ ଅଠ ଅଣା

ସୁନ୍ଦର—ସୁଲଭ—ଶିଶୁ ସାହିତ୍ୟ !

# ସାଧବଘର କଥା ସିରିଜ୍

ଲେଖକ—ଶ୍ରୀ କୃଷ୍ଣଚନ୍ଦ୍ର କର

୧ । ସାଧବ ବୁଢ଼ା
୨ । ସାଧବ ବୁଢ଼ୀ
୩ । ସାଧବ ଝିଅ
୪ । ସାଧବ ପୁଅ
୫ । ସାଧବ ବୋହୂ
୬ । ସାଧବ ନାତି

ପ୍ରତ୍ୟେକର ମୂଲ୍ୟ ଚାରିଅଣା

---

# କଥା କେତୋଟି ସିରିଜ୍

ଲେଖକ—ଶ୍ରୀ ଗୋଦାବରୀଶ ମହାପାତ୍ର

୧ । ମାଟିର ମାୟା—ଛଅ ଅଣା
୨ । ତୀର୍ଥଯାତ୍ରୀ—ଆଠ ଅଣା
୩ । ମଣିଷ ବଞ୍ଚେ କପରି—ଆଠ ଅଣା
୪ । ଭଗବାନ୍ କାହାର—ଚାରି ଅଣା
୫ । ଅନ୍ଲେକ—ଚାରି ଅଣା
୬ । କଳାପାଣିର ବନ୍ଦୀ—ଆଠ ଅଣା
୭ । ଗାଁର ଭାଇ—ଆଠ ଅଣା

ପ୍ରତ୍ୟେକ ଗଳ୍ପ ପୃଥିବୀ-ପ୍ରସିଦ୍ଧ କେତେକ ଗଳ୍ପର ଅବଲମ୍ବନରେ ଲିଖିତ ।

ଶ୍ରୀ ଉଦୟନାଥ ଷଡ଼ଙ୍ଗୀଙ୍କ ପ୍ରଣୀତ

# ଗ୍ରହ ଉପଗ୍ରହ ସିରିଜ୍

ଶିଶୁମାନଙ୍କ ପାଇଁ ବିଜ୍ଞାନ ରାଜ୍ୟର
ନୂତନ ଆଲୋକ

୧ । ସୂର୍ଯ୍ୟ   ୩ । ଚନ୍ଦ୍ର
୨ । ପୃଥିବୀ   ୪ । ମଙ୍ଗଳ
୫ । ଆକାଶ ମଣ୍ଡଳ

ପ୍ରତ୍ୟେକଟି ସଚିତ୍ର । ପ୍ରତ୍ୟେକର ମୂଲ୍ୟ ଟ ୦ ।/

---

ସ୍ୱର୍ଗତ ଶିଶୁ ସାହିତ୍ୟିକ ରାମଚନ୍ଦ୍ର ଆଚାର୍ଯ୍ୟଙ୍କ ପ୍ରଣୀତ

# ହିତ କଥା ସିରିଜ୍

ସଂସ୍କୃତ 'ହିତୋପଦେଶ କଥା'ର ଅବଲମ୍ବନରେ ଲିଖିତ ।

୧ । ପ୍ରଥମ ଭାଗ—ମିତ୍ରଲାଭ   ୩ । ତୃତୀୟ ଭାଗ—ବିଗ୍ରହ
୨ । ଦ୍ୱିତୀୟ ଭାଗ—ସୁହୃଦ୍‌ଭେଦ   ୪ । ଚତୁର୍ଥ ଭାଗ—ସନ୍ଧି

ପ୍ରତ୍ୟେକଟି ସଚିତ୍ର । ପ୍ରତ୍ୟେକର ମୂଲ୍ୟ ଟ ୦ ।୵

ନୂତନ ସଂସ୍କରଣ ପ୍ରକାଶ ପାଇଛି ।

ପ୍ରକାଶକ—

## ନିଉ ଷ୍ଟୁଡେଣ୍ଟ୍‌ସ୍ ଷ୍ଟୋର୍ସ ଲି:

ଓଡ଼ିଶାରେ ପ୍ରସିଦ୍ଧ ଶିଶୁ ସାହିତ୍ୟିକମାନଙ୍କ ଦ୍ୱାରା ସଙ୍କଳିତ

# ଅମର ଚରିତମାଳା

## ପ୍ରତ୍ୟେକର ମୂଲ୍ୟ ଛଅ ଅଣା

୧ । ଜୟଦେବ
୨ । ଜଗନ୍ନାଥ ଦାସ
୩ । ସାଧୁସୁନ୍ଦର ଦାସ
୪ । ସାରଳା ଦାସ
୫ । ଉପେନ୍ଦ୍ର ଭଞ୍ଜ
୬ । କବିସୂର୍ଯ୍ୟ
୭ । ରାଧାନାଥ ରାୟ
୮ । ଗଙ୍ଗାଧର ମେହେର
୯ । ନନ୍ଦକିଶୋର ବଳ
୧୦ । ଫକୀରମୋହନ
୧୧ । ଚନ୍ଦ୍ରଶେଖର
୧୨ । ବିଶ୍ୱନାଥ କର
୧୩ । କୁନ୍ତଳା କୁମାରୀ
୧୪ । ଗୋବିନ୍ଦ ରଥ
୧୫ । ଜୟୀ ରାଜଗୁରୁ
୧୬ । ବକ୍ସି ଖୁଣ୍ଟିଆ
୧୭ । କୃତ୍ତିବାସ ପଟ୍ଟସାଣି
୧୮ । ଉତ୍କଳମଣି ଗୋପବନ୍ଧୁ
୧୯ । କୁଳବୃଦ୍ଧ ମଧୁସୂଦନ
୨୦ । କର୍ମଯୋଗୀ ଗୌରୀଶଙ୍କର
୨୧ । ପଣ୍ଡିତ କୃପାସିନ୍ଧୁ
୨୨ । ନରସିଂହ ଦାସ
୨୩ । ନୀଳମଣି ବିଦ୍ୟାରତ୍ନ
୨୪ । ଖାରବେଳ
୨୫ । ଯଯାତିକେଶରୀ
୨୬ । ଚୋଳଗଙ୍ଗ ଦେବ
୨୭ । ଅନଙ୍ଗଭୀମ ଦେବ
୨୮ । କପିଳେନ୍ଦ୍ର ଦେବ
୨୯ । ପୁରୁଷୋତ୍ତମ ଦେବ
୩୦ । ପ୍ରତାପରୁଦ୍ର ଦେବ
୩୧ । ମୁକୁନ୍ଦଦେବ
୩୨ । ଶ୍ରୀ ରାମଚନ୍ଦ୍ର ଭଞ୍ଜ
୩୩ । ଧ୍ରୁବଳ ଦେବ
୩୪ । ଭକ୍ତକବି ମଧୁସୂଦନ
୩୫ । ଗୋପାଳ ପ୍ରହରାଜ
୩୬ । ଶଶୀଭୂଷଣ ରାୟ

ପ୍ରକାଶକ—

**ନବ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ ଲିଃ**